# —ମୁଖବନ୍ଧ—

ମଣିଷ ତଥା ପ୍ରାଣୀମାନଙ୍କ ଶରୀରକୁ ଭିଟାମିନ୍ ଓ ହରମୋନ ଯେଭଳି ଭାବରେ ପ୍ରଭାବିତ କରନ୍ତି, ଅନ୍ୟ କୌଣସି ପଦାର୍ଥ ସେମିତି ଭାବରେ ପ୍ରଭାବିତ କରିବାର ଜଣାଯାଇନି । ଉଭୟ ଯାକ ଖୁବ୍ ଅଳ୍ପ ମାତ୍ରାରେ ଆବଶ୍ୟକ ହେଲେବି ମଣିଷ ଶରୀରଉପରେ ବିଶିଷ୍ଟ ପ୍ରଭାବ ପକାଇଥାନ୍ତି । ଶରୀରର ସମ୍ୟକ ଅଭିବୃଦ୍ଧି, ମାନସିକ ବିକାଶ, ତଥା ରୋଗ ପ୍ରତିରୋଧୀ କ୍ଷମତା ଆଦିରେ ଉଭୟଙ୍କ ଦକ୍ଷତା ସମଭାବରେ ଦେଖାଯାଏ । ଏଥିଭିତରୁ ପ୍ରଥମଟିକୁ ବାହାରୁ ଖାଦ୍ୟ ସହିତ ଶରୀର ଭିତରକୁ ଯୋଗାଇବାକୁ ପଡେ, ଅନ୍ୟଟି ଆମ ଶରୀର ଭିତରେ ଥିବା କେତେକ ଗ୍ରନ୍ଥିରୁ କ୍ଷରିତ ହୁଏ । ଭିଟାମିନ ଅଭାବରୁ ଯେମିତି ଅନେକ ପ୍ରକାର ରୋଗ ହୁଏ, ହରମୋନ ଅଭାବରୁ ମଧ୍ୟ ସେମିତି ନାନାପ୍ରକାର ରୋଗ ହୁଏ । ଏହି ହରମୋନ ଅଭାବରୁ ଆମ ଭିତରୁ କିଏ ବାମନ ହୋଇଯାଏ ତ, କିଏ କୋଡ଼ିଏ ପଚିଶି ବର୍ଷ ପର୍ଯ୍ୟନ୍ତ ନ ବଢି ଗ୍ରେଟ ପିଲାଟିଏ ଭଳି ରହିଯାଏ । କିଏ ମାଇଚିଆ ହୋଇଯାଏ ତ କିଏ ଅଣ୍ଡିରିଚଣ୍ଡୀ ହୋଇଯାଏ, ଏମିତି କେତେ କ'ଣ ।

ଆମ ଦେଶରେ ପିଲାମାନଙ୍କ ଦୃଷ୍ଟିଶକ୍ତି କମିଯିବା ଏକ ସାଧାରଣ ଘଟଣା । ଭିଟାମିନ-କ ର ଅଭାବରୁ ଏ ରୋଗ ହୁଏ । ଅମ ସମସ୍ତଙ୍କ ଧାରଣା ଭିଟାମିନ-କ ଦୁଧ, ଅଣ୍ଡା, ଘିଅ, ମାଛ, ମାଂସରେ କେବଳ ଅଛି । ତାହା ପ୍ରକୃତରେ ଠିକ୍ ନୁହେଁ । ଜୀବସାର-କ ପାଳଙ୍ଗ ଶାଗ, ସଜନା ଶାଗ, ଲେଉଟିଆ ଶାଗରେ ଏତେ ଅଧିକ ପରିମାଣରେ ଅଛି ଯେ ସେସବୁ ଶାଗ ଖାଉଥିଲେ ଏହି ଭିଟାମିନର ଅଭାବ ହେବନି । ଭିଟାମିନ ଥିବା ଖାଦ୍ୟର ଅଜ୍ଞତା ହେତୁ ଆମକୁ ଅନେକ ସମୟରେ ଭିଟାମିନ ଅଭାବଜନିତ ନାନା ପ୍ରକାର ରୋଗ ଧରେ । ଭିଟାମିନ ଥିବା କେତେକ ସହଜ ସୁଲଭ ଶାକସବଜି, ଫଳମୂଳକୁ ଆମ ଦେଶର ପିଲାଙ୍କୁ ଚିହ୍ନାଇବା ପାଇଁ ଏହି ବହିଟି ଲେଖାଯାଇଛି । ଆମେ ଅମ ବାଡିବଗିଚାର ଶାକସବଜିକୁ ଚିହ୍ନିପାରିଲେ ଆମକୁ ଭିଟାମିନ ଅଭାବଜନିତ ରୋଗ ହେବନି ।

ଆମ୍ରପଲ୍ଲୀ — ଲେଖକ

ଶ୍ରୀଗୁଣ୍ଡିଚା ତା ୧୫-୭-୮୮

# ସୂଚୀପତ୍ର

## ଭିଟାମିନ୍



## ହରମୋନ୍





## ପ୍ରଥମ ଅଧ୍ୟାୟ

# ଭିଟାମିନ୍ ବା ଜୀବସାରର ଆବିଷ୍କାର କାହାଣୀ

ବହୁତ ଦିନ ତଳର କଥା । ବୁଦ୍ଧଦେବ ସେତେବେଳକୁ ଆମ ଦେଶରେ ଜନ୍ମ ହୋଇ ନଥାନ୍ତି । ତାଙ୍କ ଜନ୍ମ ହେବା ଆହୁରି ଦୁଇହଜାର କି ଅଢ଼େଇ ହଜାର ବର୍ଷ ବାକି ଥାଏ । ସେତେବେଳେ ଆମ ଦେଶରେ ସମ୍ଭବତଃ ଦ୍ୱାପର ଯୁଗ ଚାଲିଥାଏ । ମହାଭାରତ ଯୁଦ୍ଧ ଆରମ୍ଭ ହୋଇ ନଥାଏ । ସେ ଯୁଗରେ ପୃଥିବୀରେ ଖୁବ୍ କମ୍ ସଭ୍ୟଦେଶ ଥାନ୍ତି । ସେଥିଭିତରୁ ଚୀନ ଦେଶ ଗୋଟିଏ । ସେ ଦେଶରେ ଏକ ପ୍ରକାର ରୋଗ ଦେଖାଦେଲା, ଯାହା ପାଇଁକି କୌଣସି ଔଷଧ ନଥିଲା । ସେ ରୋଗର କାରଣ କ'ଣ କେହି ମଧ୍ୟ ଜାଣିପାରୁ ନଥିଲେ । ସେ ରୋଗରେ ଦେହ, ହାତ ଦୁର୍ବଳ ହୋଇଯାଏ । କାମଦାମ କରିବାକୁ ଇଚ୍ଛା ହୁଏନି । ସାଧାରଣ ଭାବରେ ଚାଲିବା କଷ୍ଟକର ହୋଇପଡ଼େ, ଶରୀରର ମାଂସପେଶୀ ଗୁଡ଼ିକ ଅକାମୀ ହୋଇପଡ଼ନ୍ତି । ମୁହଁ, ଗୋଡ଼, ହାତ ସବୁ ଫୁଲିଯାଏ । ଏହି ରୋଗକୁ ସେ ଯୁଗରେ 'ନାହିଁ, ନାହିଁ' ରୋଗ କୁହା ଯାଉଥିଲା । ଏହି ରୋଗ ହେଲେ ରୋଗୀ ଏତେ ଦୁର୍ବଳ ହୋଇପଡ଼େ ଯେ ସେ କାମଧନ୍ଦାକୁ ଯାଇପାରେନି । କେହି କାମକୁ ଡାକିଲେ ସେ 'ନାହିଁ', 'ନାହିଁ' କରେ । ଏହି 'ନାହିଁ', 'ନାହିଁ'ରୁ ସେ ରୋଗର ପରେ ପରେ ନାମକରଣ ହେଲା ବେରିବେରି । ଏହି ରୋଗରେ ଚୀନ ଦେଶରେ ବହୁ ଲୋକ ମରି ଯାଉଥିଲେ । ଏଥିପାଇଁ କିଛି ଔଷଧ ଜଣା ନଥିଲା ।

ଖ୍ରୀଷ୍ଟିୟନମାନଙ୍କ ଧର୍ମ ପୁସ୍ତକ ବାଇବେଲରେ ଗୋଟିଏ ଅଦ୍ଭୁତ ରୋଗ କଥା ଲେଖା ଅଛି । ପୁରାତନ ଟେଷ୍ଟାମେଣ୍ଟରେ ଲିପିବଦ୍ଧ ଅଛି ଯେ ଜବ୍ ରୋଗାକ୍ରାନ୍ତ ହୋଇ କହୁଥିଲେ, "ଯନ୍ତ୍ରଣାରେ ମୋ ହାଡ଼, ମାଂସ ସବୁ ଜଳି ପୋଡ଼ି ଯାଉଛି । ମୋ ଚମ କଳା ପଡ଼ିଗଲାଣି ।" ଜବ୍‌ଙ୍କର ଏହି ରୋଗ କ'ଣ କେହି ଜାଣି ପାରୁ ନଥିଲେ । ତେଣୁ ଏହି ରୋଗର ଚିକିତ୍ସା କଥା କାହାରିକୁ ଜଣା ନଥିଲା । ପରେ ଅବଶ୍ୟ ଜଣା ପଡ଼ିଲା, ଏହି ରୋଗ କେତେ ପ୍ରକାର ଖାଦ୍ୟପଦାର୍ଥର ଅଭାବରୁ ହିଁ ହୁଏ ।

ଖ୍ରୀଷ୍ଟାବ୍ଦ ତ୍ରୟୋଦଶ ଶତାବ୍ଦୀରେ ହଜଏନ ଝଞ୍ଜି ଲେଖିଛନ୍ତି ଯେ ଲୋକଙ୍କୁ ସେ ଯୁଗରେ ଏକ ପ୍ରକାର ବିଚିତ୍ର ରୋଗ ହେଉଥିଲା, ଯେଉଁଥିରେ ଦାନ୍ତ ମାଡ଼ି ଘା ହୋଇ ପଚିସଡ଼ି ଯାଉଥିଲା । ରୋଗୀ ଏତେ କଷ୍ଟ ପାଉଥିଲା ଯେ ସେ ମୋଟେ ଖାଇପାରୁ ନଥିଲା । ସେ ଯୁଗରେ ତ ଅପରେସନ କଲାବାଲା ଡାକ୍ତର ନଥିଲେ । ଅପରେସନ ସବୁ ଭଣ୍ଡାରୀମାନେ କରୁଥିଲେ । ସେମାନଙ୍କୁ ଡାକି ଦାନ୍ତ ମାଡ଼ିର ପଚୁସଡ଼ା ଅଂଶ ସବୁକୁ କାଟି ଫୋପାଡ଼ି ଦିଆ ଯାଉଥିଲା । ପରେ ଅବଶ୍ୟ କେତେ ପ୍ରକାର ଖାଦ୍ୟାଭାବରୁ ଏ ରୋଗ ହୁଏ ବୋଲି ଜଣା ପଡ଼ିଲା ।

କଲମ୍ବସ ଓ ଭାସ୍କୋଡ଼ଗାମା ଯେତେବେଳେ ଜଳଜାହାଜରେ ମାସ ମାସ ଧରି ସମୁଦ୍ର ଭିତରେ ଯାଇ ଆମେରିକା ଓ ଭାରତବର୍ଷ ଆବିଷ୍କାର କଲେ, ସେମାନଙ୍କ ଜାହାଜର ନାବିକମାନେ ଏହିଭଳି ରୋଗରୁ କଷ୍ଟ ପାଉଥିଲେ । ଏହି ରୋଗରେ ମଧ୍ୟ ତେର ନାବିକ ମରିଯାଉଥିଲେ । ପରେ ଜଣାପଡ଼ିଲା, କେତେଜାତିର ଖାଦ୍ୟର

ଅଭାବରୁ ଏ ରୋଗ ହୁଏ ଓ ଏ ରୋଗର ନାଁ ହେଉଛି ସ୍କର୍ଭି ରୋଗ ।

ଇଟାଲି ଦେଶରେ ଏକ ରୋଗ ହେଉଥିଲା । ଏ ରୋଗ ହେଲେ ଚମ ଖସୁରା ହୋଇଯାଏ । ଏ ରୋଗକୁ ପରେ କୁହାଗଲା ପେଲାଗ୍ରା ରୋଗ । 'ପେଲାଗ୍ରା' ଏକ ଇଟାଲୀୟ ଶବ୍ଦ । ୧୭୭୧ ମସିହାରେ ଫ୍ରାନସିସ୍‌କୋ ଫ୍ରାପୋଲି ଏହି ରୋଗ ବିଷୟରେ ନାନା ଚର୍ଚ୍ଚା କରିଥିଲେ । ଏହି ରୋଗରେ ଦେହ ମୁହଁ ଅସୁନ୍ଦରିଆ ହୋଇଯାଏ । ପରେ ଜଣାପଡ଼ିଲା କେତେ ଜାତିର ଖାଦ୍ୟର ଅଭାବ ହେଲେ ଏ ରୋଗ ହୁଏ ।

ଖ୍ରୀଷ୍ଟାବ୍ଦ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହିଭଳି ବହୁ ରୋଗର ଲକ୍ଷଣ ଶୁଣାଯାଇଥିଲା । କେହି ଜାଣିପାରୁ ନଥିଲେ, ଏହି ରୋଗ ସବୁ କ'ଣ ଓ ଏହି ରୋଗ କ'ଣ ପାଇଁ ହୁଏ ? ତେବେ କେତେକ କ୍ଷେତ୍ରରେ ଜଣା ପଡ଼ିଥିଲା, ଆମ ଖାଦ୍ୟରେ କେତେ ଜାତିର ଖାଦ୍ୟର ଅଭାବ ଘଟିଲେ, ଏହିସବୁ ବିଭିନ୍ନପ୍ରକାର ରୋଗ ହୁଏ । ତେବେ ଖାଦ୍ୟରେ କେଉଁ କେଉଁ ଜାତିର ଖାଦ୍ୟ ନଥିଲେ, କି କି ଜାତିର ରୋଗ ହୁଏ, ତାହା ସେତେବେଳେ ଜଣାପଡ଼ି ନଥିଲା ।

୧୫୩୫ ମସିହାରେ ଜେକସ କାର୍ଟିୟର ପାଇନ ଗଛର କଣ୍ଟା ଆଣି ତାକୁ ସିଝାଇ ତା'ର ଝୋଳକୁ ଖାଇବାକୁ ଦେଲେ ସ୍କର୍ଭି ରୋଗ ଭଲହୋଇ ଯାଉଥିଲା ବୋଲି କହିଥିଲେ । ୧୫୬୪ ମସିହାରେ ରାଉସିୟୁସ ମତଦେଲେ ଯେ ଲେମ୍ବୁଜାତୀୟ ଫଳ ସ୍କର୍ଭି ରୋଗୀଙ୍କୁ ଦେଲେ ସେମାନଙ୍କ ରୋଗ ଭଲ ହୋଇଯାଏ । ସେ ଓଲନ୍ଦାଜ ଜାହାଜିଆ ମାନଙ୍କର ସ୍କର୍ଭି ରୋଗକୁ ଲେମ୍ବୁ ସାହାଯ୍ୟରେ ଭଲକରି ଦେଇଥିଲେ । ୧୫୯୧ ମସିହାରେ

କେପ୍‌ଟେନ ଜେମସ ଲଙ୍କାଷ୍ଟର ପ୍ରମାଣ କଲେ ଯେ କାଗେଜଲେମ୍ବୁ ହେଉଛି ସ୍କର୍ଭି ରୋଗର ଅବ୍ୟର୍ଥ ମହୌଷଧ । ୧୭୫୩ ମସିହାରେ କେପ୍‌ଟେନ ଜେମସ ଲିଣ୍ଡ ଖଣ୍ଡିଏ ବହି ଲେଖି ସେଥିରେ ଦର୍ଶାଇଥିଲେ ଯେ ଜାହାଜରେ ନାବିକମାନେ ଶୁଖିଲା ଫଳମୂଳ, ବେଶିଦିନ ସାଇତା ହୋଇଥିବା ଖାଦ୍ୟପଦାର୍ଥ ବା ଫଳ ଖାଇଲେ ଏହି ସ୍କର୍ଭି ରୋଗ ହୁଏ ଓ ରୋଗୀମାନଙ୍କୁ ତଟକା ଫଳମୂଳ, ପଜ ପନପରିବା ଖାଇବାକୁ ଦେଲେ ଏହି ରୋଗ ମନକୁମନ ଭଲ ହୋଇଯାଏ । କେପ୍‌ଟେନ ଲିଣ୍ଡଙ୍କର ଏହି ଆବିଷ୍କାର ସେ ଯୁଗରେ ଏକ ଯୁଗାନ୍ତକାରୀ ଆବିଷ୍କାର ଭାବରେ ପରିଗଣିତ ହେଲା ।

ଏହା ଏକ ଜଣାଶୁଣା କଥା ଯେ ପୂର୍ବକାଳରେ ଓଡ଼ିଶାର ଲୋକେ ବୋଇତରେ ଯାଇ ଯାଭା, ସୁମିତ୍ରା, ସିଂହଳ ଆଦି ଦେଶମାନଙ୍କରେ ବ୍ୟବସାୟ ବାଣିଜ୍ୟ କରୁଥିଲେ । ସେଥିପାଇଁ ସେମାନଙ୍କୁ ମାସ ମାସ ଧରି ସମୁଦ୍ରରେ ରହିବାକୁ ପଡୁଥିଲା । ବଡ଼ ବଡ଼ କଲମ୍ବସ ଓ ଭାସ୍କୋଡ଼ଗାମାଙ୍କର ନାବିକମାନଙ୍କୁ ଯେଉଁ ସ୍କର୍ଭି ରୋଗ ହେଉଥିଲା, ଓଡ଼ିଶାର ନାବିକମାନଙ୍କୁ ସେହି ସ୍କର୍ଭିରୋଗ ମୋଟେ ହେଉ ନଥିଲା । ଏହାର କାରଣ ଖୋଜିବାକୁ ଯାଇ ବୈଜ୍ଞାନିକ-ମାନେ କହନ୍ତି, ଓଡ଼ିଶାର ନାବିକମାନେ ବୋଇତରେ ଯାତ୍ରା ସମୟରେ ଖାଇବାପାଇଁ ସଙ୍ଗରେ ଯେଉଁ କଖାରୁ, ଚୁଡ଼ା, କାଗେଜଲେମ୍ବୁ, ଅଁଳାକୋଳି ଆଦିର ନେଉଥିଲେ, ତା'ରି ଯୋଗୁ ସେମାନଙ୍କୁ ସ୍କର୍ଭି ରୋଗ ହେଉ ନଥିଲା । ସ୍କର୍ଭି ରୋଗକୁ ଦୂର କରୁଥିବା ପଦାର୍ଥ କଖାରୁରେ ବେଶ ପରିମାଣରେ ଥାଏ । ପାଚିଲା କଖାରୁ ଯେତେ ପୁରୁଣା ହେଉଥାଏ, ସେଥିରେ ଏହାର ପରିମାଣ କମିବା ପରିବର୍ତ୍ତେ ସେତେ ବଢ଼ୁଥାଏ । ତେଣୁ ଯେ ପରିସ୍ଥିତିରେ

ସ୍କର୍ଭିରୋଗ ହେବ କୁଆଡ଼ୁ ? ବୋଇଲରେ ନଥାଆଉଥିବାରୁ ଏହି କମଳାରେ ଅନ୍ୟନାମ ହେଉଛି ବୋଇତାଳୁ ବା ବୋଇତ କମଳା ।

· କେତେ ଜାତିର ଖାଦ୍ୟର ଅଭାବ ହେଲେ ଉପରୋକ୍ତ ରୋଗ ସବୁ ହୁଏ ବୋଲି ଜଣା ପଡ଼ିବାରୁ ବର୍ତ୍ତମାନ ଚିନ୍ତା ପଡ଼ିଲା ସେହିସବୁ ଖାଦ୍ୟରେ ଏମିତି କି କି ଜିନିଷ ଅଛି ଯେ ଏହିସବୁ ରୋଗକୁ ସେ ପ୍ରତିହତ କରିପାରୁଛି । ବୈଜ୍ଞାନିକମାନେ ସେହି ଜିନିଷଟି କଅଣ ଖୋଜିବାରେ ଲାଗିପଡ଼ିଲେ । ସେମାନେ ନାନା ପରୀକ୍ଷା କରି ଜାଣିପାରିଲେ ଯେ ଖାଦ୍ୟରେ ଏମିତି ଏକ ଅଂଶ ରହିଛି, ଯାହା ଉପରୋକ୍ତ ନାନାପ୍ରକାର ରୋଗକୁ ଭଲ କରି ପାରୁଛି । ସେମାନେ ସେହି ପଦାର୍ଥଟିର ନାଁ ଦେଲେ ଖାଦ୍ୟସାର, ବା ଜୀବସାର ବା ଇଂରାଜୀରେ ଭିଟାମିନ୍ । ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଧାତୁସାର ଭଳି ଏହା ଖାଦ୍ୟପଦାର୍ଥର ଏକ ବିଶିଷ୍ଟ ଅଂଶ । ଆମ ଖାଦ୍ୟରେ ଉପରୋକ୍ତ ସବୁପ୍ରକାର ଖାଦ୍ୟ ଥାଇ, ଏହି ଅଂଶ ଠିକ ଯଦି ନଥାଏ, ତେବେ ଆମେ ନାନାପ୍ରକାର ରୋଗରୁ କଷ୍ଟ ପାଇବା । ଆମ ସ୍ୱାସ୍ଥ୍ୟ ଭଲ ରହିବ ନାହିଁ, କି ଆମ ଶରୀର ଠିକ ଭାବରେ ବଢ଼ିବ ନାହିଁ । ଏହି ଭିଟାମିନ ମଧ୍ୟ ଗୋଟିଏ ପ୍ରକାରର ନୁହେଁ, ଏହା ବିଭିନ୍ନ ପ୍ରକାରର ଅଛି । ବିଭିନ୍ନ ପ୍ରକାର ରୋଗ ପାଇଁ ଭିନ୍ନ ଭିନ୍ନ ପ୍ରକାର ଭିଟାମିନର ଅଭାବ ଦାୟୀ । ବର୍ତ୍ତମାନ ପ୍ରଶ୍ନହେଲା କେଉଁ କେଉଁ ଭିଟାମିନର ଅଭାବ କେଉଁ କେଉଁ ରୋଗ ପାଇଁ ଦାୟୀ ।

୧୮୧୩ ମସିହାରେ ଗବେଷଣା କରି ଟମାସ ବାର୍ଲେ ପ୍ରମାଣ କଲେ ଯେ ଜୀବସାର-ଗ ବା ଭିଟାମିନ-ସିର ଅଭାବ

ହେଲେ ସ୍କର୍ଭି ରୋଗ ହୁଏ । ୧୮୯୦ ମସିହାରେ ଓଲନ୍ଦାଜ ଡାକ୍ତର କ୍ରିଷ୍ଟିୟାନ ଆଇଜାକମ୍ୟାନ ପ୍ରମାଣ କଲେ ଯେ ଜୀବସାର-ଖ ଅଭାବରେ ବେରିବେରି ରୋଗ ହୁଏ । ସେ ସେତେବେଳେ ବର୍ତ୍ତମାନର ଇଣ୍ଡୋନେସିଆରେ ଡାକ୍ତର ଥିଲେ । ସେ ୧୮୯୭ ମସିହାରେ ପ୍ରକାଶ କଲେ ଯେ ସେ କେତେକ କୁକୁଡ଼ା-ଛୁଆଙ୍କୁ କାଣ୍ଡିଆ ଧୋବ ଫରଫର ଚାଉଳ ଖାଇବାକୁ ଦେଇ ସେମାନଙ୍କ ଠାରେ ବେରିବେରି ରୋଗ ସୃଷ୍ଟି କରି ପାରିଥିଲେ । ସେ ସେମାନଙ୍କୁ ଅକାଣ୍ଡିଆ ନାଲି ଚାଉଳ ଖାଇବାକୁ ଦେଲାରୁ ସେମାନଙ୍କ ସେହି ରୋଗ ଭଲ ହୋଇଗଲା । ତେଣୁ କୁଣ୍ଡାରେ ବେରି ବେରି ରୋଗର ଅବ୍ୟର୍ଥ ଔଷଧ ନିଶ୍ଚୟ ରହିଛି । ସେଥିରୁ ସେ ପ୍ରମାଣ କଲେ ବେରିବେରି ରୋଗ କୌଣସି ଜୀବାଣୁ ଦ୍ୱାରା ହୁଏନି, କୁଣ୍ଡାରେ ଥିବା ଜୀବସାର-ଖ'ର ଅଭାବରୁ ଏଇ ରୋଗ ହୁଏ । ଆଇଜାକମ୍ୟାନଙ୍କ ଏହି ଆବିଷ୍କାର ପାଇଁ ତାଙ୍କୁ ୧୯୨୯ ମସିହାରେ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା ।

୧୮୮୨ ମସିହାରେ ଜାପାନୀ ବୈଜ୍ଞାନିକ ଟାକାକୀ ଜାହାଜଆ-ମାନଙ୍କୁ ସଫା ଚାଉଳ ପରିବର୍ତ୍ତରେ ଗହମ ଚୂନା ଖାଇବାକୁ ଦେଇ ଓ ଖାଦ୍ୟରେ ଟଟକା ଫଳମୂଳ, ସଜ ପନିପରିବା ଦେଇ ବେରିବେରି ରୋଗ ଭଲ କରିଥିଲେ । ୧୮୬୫ ମସିହାରେ ଟାଉସିଉ କଡ଼୍ ମାଛର ଯକୃତରୁ ବାହାରୁଥିବା ତେଲ ଖାଇବାକୁ ଦେଇ ପିଲାମାନଙ୍କର ଅସ୍ଥି କୋମଳ ରୋଗ ଭଲ କରିପାରିଥିଲେ । ୧୮୩୮ ମସିହାରେ ଗୁଏରିନ ଛୋଟ ଛୋଟ କୁକୁରଛୁଆମାନଙ୍କୁ ଚର୍ବିନଥିବା ଖାଦ୍ୟ ଦେଲାରୁ ସେମାନଙ୍କୁ ଅସ୍ଥି କୋମଳ ରୋଗ ହେଲା । କଡ଼ମାଛ କଲିଜା ତେଲ ଦେଲାରୁ ସେ ରୋଗ ଭଲ ହୋଇଗଲା । ଏଥିରୁ ଜଣାପଡ଼ିଲା କଡ଼ମାଛର କଲିଜାରୁ ବାହାରୁଥିବା

ତେଲ ଖାଇବାକୁ ଦେଲେ ପିଲାମାନଙ୍କର ଅସ୍ଥିକୋମଳ ରୋଗ ଭଲ ହୋଇଯାଏ । ଏଥିରୁ ଜଣାପଡ଼ିଲା କଡ଼ ମାଛର କଲିଜାରୁ ବାହାରୁଥିବା ତେଲରେ ଅସ୍ଥିକୋମଳ ରୋଗ ଭଲ କରିପାରୁଥିବା ପଦାର୍ଥ ନିଶ୍ଚୟ ଅଛି । ୧୯୦୧ ମସିହାରେ ଗ୍ରିଜନ କୁକୁଡ଼ାମାନଙ୍କୁ ସଫା କାଣ୍ଡିଆ ଚାଉଳ ଖାଇବାକୁ ଦେଲାରୁ ବେରିବେରି ରୋଗ ହେଲା । ସେ ମତ ଦେଲେ ସଫା କାଣ୍ଡିଆ ଚାଉଳରେ ଏମିତି ଏକ ପଦାର୍ଥର ଅଭାବ ଅଛି, ଯାହା ପାଇଁକି ବେରିବେରି ରୋଗ ହେଉଛି । ଖାଦ୍ୟରେ ସେ ଅଭାବ ଠିକ ଦୂର ହୋଇଗଲେ ରୋଗ ଭଲ ହୋଇଯାଉଛି । ବର୍ତ୍ତମାନ ବୈଜ୍ଞାନିକମାନେ ଲାଗିପଡ଼ିଲେ ଖାଦ୍ୟରୁ ସେହି ଅପୂର୍ବ ଜିନିଷ ଠିକ ବାହାର କରିବା ପାଇଁ ।

ଏ ଦିଗରେ ସର୍ବପ୍ରଥମେ ପରୀକ୍ଷା ଚଳାଇଲେ ଲୁନିନ୍ ୧୮୮୧ ମସିହାରେ । ସେ କେତେଗୁଡ଼ିଏ ମୂଷା ନେଇ ସେମାନଙ୍କୁ ବିଶୁଦ୍ଧ ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଧାତୁସାର ଆଦି ଖାଦ୍ୟ ଆବଶ୍ୟକ ଅନୁସାରେ ଖାଇବାକୁ ଦେଲେ । ଏହା ଫଳରେ ଦେଖାଗଲା ମୂଷାମାନଙ୍କର ସମ୍ୟକ ଅଭିବୃଦ୍ଧି ହେଉନି । ଓଲଟି ସେମାନଙ୍କୁ କେତେପ୍ରକାର ରୋଗ ହେଉଛି । ୧୯୦୫ ମସିହାରେ ପେକେଲ ହେରିଙ୍ଗ ସେହି ଖାଦ୍ୟରେ କିଛି ଦୁଧ ମିଶାଇଲାରୁ ସେମାନଙ୍କ ଶରୀରର ଅଭିବୃଦ୍ଧି ଠିକ୍ ଭାବରେ ହେଲା । ଏଥିରୁ ଜଣାପଡ଼ିଲା ଦୁଧରେ ଶରୀର ବୃଦ୍ଧି ସହାୟକ ପଦାର୍ଥ ରହିଛି । ୧୯୧୦ ମସିହାରେ ଇଂରେଜ ଡାକ୍ତର ଫ୍ରେଡ଼େରିକ ଗୋଲେଣ୍ଡ ହପକିନ୍‌ସ ସେହିପରି ଦୁଧରେ ଶରୀର ବୃଦ୍ଧି ସହାୟକ ପଦାର୍ଥ ଥିବାର ପ୍ରମାଣ କଲେ । ଏହି ଆବିଷ୍କାର ପାଇଁ ହପ୍‌କିନସ

୧୯୨୯ ମସିହାରେ ଆଇଜାକମ୍ୟାନଙ୍କ ସହିତ ଚିକିତ୍ସାବିଜ୍ଞାନରେ ନୋବେଲ ପୁରସ୍କାର ଲାଭକଲେ ।

୧୯୧୨ ମସିହାରେ ପୋଲଣ୍ଡର ସୁବିଖ୍ୟାତ ବୈଜ୍ଞାନିକ କାସିମିର ଫୁଙ୍କ କୁଣ୍ଡାରୁ ଏମିତି ଏକ ପଦାର୍ଥ ଅଲଗା କଲେ, ଯାହାକି ବେରିବେରି ରୋଗ ଦୂର କରିପାରୁଥିଲା । ସେ ପରୀକ୍ଷା କରି ଦେଖିଲେ ଏହି ପଦାର୍ଥଟି ଏକ ପ୍ରକାର ଏମିନ ଜାତୀୟ ପଦାର୍ଥ । ସେ ଏହାର ନାମ ଦେଲେ ଭିଟାମିନ୍, କାରଣ ଏହା ହେଉଛି ଏକ ପ୍ରକାର ଏମିନ, ଯାହାକି ଜୀବନ ସହାୟକ ଭାବରେ ଏକାନ୍ତ ଆବଶ୍ୟକ । ଇଂରାଜୀ ଶବ୍ଦ ଭାଇଟେଲ ଏମିନ (vital amine)ରୁ ଭିଟାମିନ ଶବ୍ଦର ସୃଷ୍ଟି । ଭାଇଟେଲ ଏମିନ ହେଉଛି ଜୀବନ ରକ୍ଷାକାରୀ ଏମିନ୍ । ସେତେବେଳେ ଜୀବନ ରକ୍ଷାକାରୀ ଯେତେ ଖାଦ୍ୟପଦାର୍ଥ ବାହାରିଲା, ସବୁଥିରେ ଏମିନ ଥାଉ ବା ନଥାଉ, ଯବକ୍ଷାରଜାନ ଥିଲା । ତେଣୁ ସେ ସବୁକୁ **vitamine** କହିବାରେ କିଛି ଅସୁବିଧା ହେଲାନି । କିନ୍ତୁ ପରେ ଏମିତି କେତେକ ଜୀବନ ରକ୍ଷାକାରୀ ପଦାର୍ଥ ବାହାରିଲା, ଯେଉଁଥିରେ ନଥିଲା ଏମିନ୍, ନ ଥିଲା ଯବକ୍ଷାରଜାନ । ଏହା ଦେଖି ବୈଜ୍ଞାନିକ ଡ୍ରମଣ୍ଡ ୧୯୧୫ ମସିହାରେ ମତଦେଲେ ଯେ **vitamine** ଶବ୍ଦରୁ **'e'** ଶବ୍ଦଟିକୁ ବାଦ ଦେବାପାଇଁ । ସେହି ଦିନ ଠାରୁ **vitamin** ଶବ୍ଦର ପ୍ରଚଳନ ହେଲା । ଖାଦ୍ୟରେ ଯେତେ ପ୍ରକାର ଜୀବନ ରକ୍ଷାକାରୀ ପଦାର୍ଥ ଅଛି ସେସବୁକୁ **vitamin** ଭାବରେ ନାମିତ କରାହେଲା । ଦିନକୁ ଦିନ ଏହି ଜୀବନ ରକ୍ଷାକାରୀ ବା ଭିଟାମିନର ସଂଖ୍ୟା ବଢିବାକୁ ଲାଗିଲା । ସେସବୁ ନୂଆ ନୂଆ ଭିଟାମିନରେ ନା ଏମିନୋ ଗ୍ରୁପ୍ ଅଛି, ନା ଯବକ୍ଷାରଜାନ ଅଛି ।

ହେଲେ ଭିଟାମିନ ଶବ୍ଦଟି ସଚରାଚର ଗୃହୀତ ହୋଇଯାଇଥିବାରୁ ଭିଟାମିନର ଆର୍ଣ୍ଣ ପ୍ରୟୋଗ ହୋଇଛି । ଇଂରାଜୀରେ ଯାହାକୁ ଭିଟାମିନ କୁହାଯାଏ, ଆମ ଓଡ଼ିଆରେ ତାକୁ ଖାଦ୍ୟପ୍ରାଣ, ଖାଦ୍ୟସାର, ଜୀବନିକା, ଜୀବସାର ଆଦି କହୁଁ । ଏସବୁର ଅର୍ଥ ଗୋଟିଏ, ଖାଦ୍ୟରେ ଥିବା ଜୀବନ ରକ୍ଷାକାରୀ ପଦାର୍ଥ । ଏହି ପ୍ରଦାର୍ଥ ଖାଦ୍ୟର ଅନ୍ୟ ଗୁରୁତ୍ୱପୂର୍ଣ୍ଣ ଅଂଶ ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଧାତୁସାର ଠାରୁ ପୃଥକ ଓ ଏହା ଆମ ଶରୀର ପାଇଁ ଅଳ୍ପ ପରିମାଣରେ ଦରକାର । ଖାଦ୍ୟରେ ମଧ୍ୟ ଏହା ଖୁବ୍ କମ ପରିମାଣରେ ଥାଏ ଓ ସେଥିକରେ ମଧ୍ୟ ଏହା ଶରୀରର ନାନା ରୋଗକୁ ପ୍ରତିହତ କରି ଶରୀରକୁ ନିରୋଗ ରଖେ ଓ ଶରୀରର ସମ୍ୟକ ଅଭିବୃଦ୍ଧିରେ ସାହାଯ୍ୟ କରେ ।



## ଦ୍ୱିତୀୟ ଅଧ୍ୟାୟ

## ଭିଟାମିନ୍ ବା ଜୀବସାରର ଶ୍ରେଣୀ ବିଭାଗ

ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଖାଦ୍ୟ ପଦାର୍ଥରେ ଜୀବସାରର ଗୁରୁତ୍ୱ ସ୍ପଷ୍ଟ ଭାବରେ ପ୍ରତିପାଦିତ ହୋଇଯାଇଥିଲା । ଏହା ଯଦିଚ ସୁଷମଖାଦ୍ୟର ଏକ ଅଙ୍ଗ, ଏହା ଅନ୍ୟ ଖାଦ୍ୟଭଳି ଅଧିକ ପରିମାଣରେ ଆମ ଶରୀର ପାଇଁ ଦରକାର ହୁଏ ନାହିଁ । ଏହା ମଧ୍ୟ ସାଧାରଣ ଖାଦ୍ୟରେ ବେଶି ପରିମାଣରେ ନଥାଏ । ଏହା ଆମ ଖାଦ୍ୟରେ ଶତକଡ଼ା ମାତ୍ର ·୦୦୦୨ ରୁ ·୦୦୫ ଭାଗ ରହିଲେ ଆମର ଭିଟାମିନ ଅଭାବ ରହେନି । ଏହା ଆମର ଅନ୍ୟ ଖାଦ୍ୟ ଭଳି ବହୁ ପରିମାଣରେ ଲୋଡ଼ା ହୁଏନି ।

ଭିଟାମିନ ଅଭାବରୁ ଯେଉଁସବୁ ରୋଗ ହୁଏ, ସେ ସବୁ ରୋଗର ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି । ଭିଟାମିନ-କ ଅଭାବରୁ ଅନ୍ଧାରକଣା ରୋଗ ହୁଏ, ଭିଟାମିନ-ଗ ଅଭାବରୁ ସ୍କର୍ଭି ରୋଗ ହୁଏ । ଭିଟାମିନ-ଘ ଅଭାବରୁ ଅସ୍ଥିକୋମଳ ରୋଗ ହୁଏ, ଭିଟାମିନ-ଖ ଅଭାବରୁ ବେରିବେରି ରୋଗ ହୁଏ, ଆଉ ଏକ ଭିଟାମିନ-ଖ ଅଭାବରୁ ପେଲଗ୍ରା ରୋଗ ହୁଏ । ଏହିଭଳି ବହୁ ରୋଗର କାରଣ ନାନାପ୍ରକାର ଭିଟାମିନର ଅଭାବ ବୋଲି ଜଣା ପଡ଼ିଲାଣି । ଭିଟାମିନର ସଂଖ୍ୟା ଓ ସେମାନଙ୍କ ଅଭାବ ଜନିତ ରୋଗର ସଂଖ୍ୟା ଦିନକୁଦିନ ଏତେ ବଢ଼ି ବଢ଼ି ଚାଲିଲାଣି ଯେ ସେଗୁଡ଼ିକର ଯଥାଯଥ ଶ୍ରେଣୀକରଣ ନ କଲେ ସେମାନଙ୍କ

ଅଧ୍ୟୟନ ସୁଶୃଙ୍ଖଳିତ ହେବନି । ତେଣୁ ବୈଜ୍ଞାନିକମାନେ ଭିଟାମିନର ଶ୍ରେଣୀକରଣ କରିଛନ୍ତି । ବିଭିନ୍ନ ଭିଟାମିନର ନାମକରଣ କରାଯାଇଛି ଯଥା—ଭିଟାମିନ-କ, ଖ, ଗ, ଘ, ଚ ଇତ୍ୟାଦି । ଏହି ଭିଟାମିନ ଭିତରୁ କେତେକେ ଜଳରେ ଦ୍ରବଣୀୟ ତ କେତେକେ ଚର୍ବିରେ ଦ୍ରବଣୀୟ । ତେଣୁ ପ୍ରଥମତଃ ସେମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା—ଜଳରେ ଦ୍ରବଣୀୟ ଭିଟାମିନ ଓ ଚର୍ବିରେ ଦ୍ରବଣୀୟ ଭିଟାମିନ ।

ଜଳରେ ଦ୍ରବଣୀୟ ଭିଟାମିନ ଭିତରେ ଭିଟାମିନ-ବି କମ୍ପ୍ଲେକ୍ସ, ଭିଟାମିନ-ଗ, ଭିଟାମିନ-ପି ଆଦି ପ୍ରଧାନ । ଚର୍ବିରେ ଦ୍ରବଣୀୟ ଭିତରେ ଭିଟାମିନ-କ, ଭିଟାମିନ-ଘ, ଭିଟାମିନ-ଚ ଭିଟାମିନ-କେ ଆଦି ରହିଛି । ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରାୟ ସତର ଅଠର ଗୋଟି ଭିଟାମିନ ଆବିଷ୍କୃତ ହେଲାଣି । ସେସବୁ ଅଭାବରୁ କେଉଁ କେଉଁ ରୋଗ ହୁଏ; ତାହା ମଧ୍ୟ ଜଣା ପଡ଼ିଲାଣି । ଏହିସବୁ ଭିଟାମିନର ନାମକରଣ ତଳେ ଦିଆଗଲା ।

**(କ) ଚର୍ବିରେ ଦ୍ରବଣୀୟ ଭିଟାମିନ—**

୧ । ଭିଟାମିନ-କ ଓ କ୍ର

୨ । ଭିଟାମିନ-ଘ ।, ଏଥିରେ ପ୍ରଧାନତଃ ଦୁଇପ୍ରକାର ଘ ଭିଟାମିନ ଅଛି । ଯଥା—ଭିଟାମିନ-ଘ୍ର ଓ ଭିଟାମିନ ଘ୩

୩ । ଭିଟାମିନ-ଚ (ଟକୋଫେରଲ)

୪ । ଭିଟାମିନ-କେ

**(ଖ) ଜଳରେ ଦ୍ରବଣୀୟ ଭିଟାମିନ—**

୫ । ଭିଟାମିନ-ଖ୍ର ବା ଥାୟାମିନ

୬ । ଭିଟାମିନ- ଖ୍ର, ରାଇବୋଫ୍ଲେଭିନ୍

୭ । ନିଆସିନ ଓ ନିଆସିନ ଏମାଇଡ୍

୮ । ଭିଟାମିନ-ଖ୬ ବା ପିରିଡ଼କସିନ୍
୯ । ପେଣ୍ଟୋଥେନିକ ଅମ୍ଳ
୧୦ । ଫୋଲିକ ଅମ୍ଳ
୧୧ । ବାୟୋଟିନ୍
୧୨ । କୋଲିନ
୧୩ । ପାରାଏମିନୋ ବେନଜଇକ ଅମ୍ଳ
୧୪ । ଆଇନୋସିଟଲ
୧୫ । ଭିଟାମିନ୍-ଖ୧୨ ବା ସିଆନୋକୋବାଲମିନ୍
୧୬ । ଭିଟାମିନ-ଗ (ଆସକର୍ବିକ ଅମ୍ଳ)
୧୭ । ଭିଟାମିନ-ପି

ଭିଟାମିନ କ, ଖ, ଗ, ଘ ଆଦି ନାମ ମନେରଖିବା କଷ୍ଟକର ହେଉଥିବାରୁ ସେମାନଙ୍କ ରସାୟନିକ ନାମ ଦ୍ୱାରା ସେଗୁଡ଼ିକୁ ମଧ୍ୟ ଚିହ୍ନିତ କରାଯାଉଛି । ଯେମିତି ଭିଟାମିନ-କ କୁ ରେଟିନଲ, ଭିଟାମିନ-ଘ କୁ କେଲସିଫେରଲ ଭିଟାମିନ-ଖ୧କୁ ଥାୟାମିନ, ଭିଟାମିନ-ଖ୨ କୁ ରାଇବୋ-ଫ୍ଲେଭିନ, ଭିଟାମିନ-ଗକୁ ଆସକରବିକ ଅମ୍ଳ, ଭିଟାମିନ-ଚ କୁ ଟକୋଫେରଲ ଆଦି ନାମରେ ନାମିତ କରାଯାଇଛି ।

**ଭିଟାମିନର ମାପ ପ୍ରଣାଳୀ—**

ଭିଟାମିନର ପରିମାଣକୁ ସୁଚାଇବା ପାଇଁ ପ୍ରଧାନତଃ ଦୁଇଗୋଟି ପ୍ରଥା ଅନୁସୃତ ହୁଏ । ଯଥା—ଆନ୍ତର୍ଜାତିକ ଇଉନିଟ ପ୍ରଥା ବା ମିଲିଗ୍ରାମ ଓ ମାଇକ୍ରୋଗ୍ରାମ ପ୍ରଥା । ଗୋଟିଏ ଅନ୍ତର୍ଜାତିକ ଇଉନିଟ, ଗୋଟିଏ ମାଇକ୍ରୋଗ୍ରାମ ସହିତ ସମାନ । ଏକ ଗ୍ରାମ୍‌ର ହଜାରର ଭାଗରୁ ଭାଗେ ହେଉଛି ମିଲିଗ୍ରାମ ଓ ହଜାରେ ମାଇକ୍ରୋଗ୍ରାମ ଏକ ମିଲିଗ୍ରାମ ସହିତ ସମାନ ।

## ତୃତୀୟ ଅଧ୍ୟାୟ

## ଭିଟାମିନ୍-କ ବା ଜୀବସାର-କ

**ଆବିଷ୍କାର—**

୧୯୧୭ ମସିହାରେ ମେକ୍‌କୋଲମ ଓ ଡେଭିସ ଏହି ଜୀବସାରକୁ ଆବିଷ୍କାର କରିଥିଲେ । ସେମାନଙ୍କ ପୂର୍ବରୁ ଅସବର୍ଣ୍ଣ ଓ ମେଣ୍ଡେଲ ୧୯୧୩ ମସିହାରେ ଏହି ଜୀବସାର ଲହୁଣୀରେ ଥିବାର ପ୍ରମାଣ କରିଥିଲେ ଓ ଏହା ଖାଦ୍ୟରେ ନ ରହିଲେ ମୂଷାମାନଙ୍କର ସମ୍ୟକ ଶାରୀରିକ ଅଭିବୃଦ୍ଧି ହୁଏନି ବୋଲି ଉଭୟ ଦଳ ପ୍ରମାଣ କରିଥିଲେ । ଏହି ଜୀବସାର ଚର୍ବିରେ ଦ୍ରବଣୀୟ, ତେଣୁ ଏହା ସାଧାରଣତଃ ପ୍ରାଣୀମାନଙ୍କ ଶରୀରରୁ ମିଳିବା କଥା । ଜୀବସାର-କ ର ରାସାୟନିକ ନାମ ହେଉଛି ରେଟିନଲ୍ ।

୧୯୧୯ ମସିହାରେ ଷ୍ଟିନବକ ପ୍ରମାଣ କଲେ ଯେ ବହୁତ ପନିପରିବା ଓ ଫଳମୂଳରେ ଥିବା କେରୋଟିନ ଜାତୀୟ ପଦାର୍ଥ ଜୀବସାର-କ ର ଗୁଣ ଦେଖାଏ । ୧୯୩୦ ମସିହାରେ ବୈଜ୍ଞାନିକ ମୁର୍ ଜୀବସାର-କ ଅଭାବ ଥିବା ପ୍ରାଣୀମାନଙ୍କୁ କେରୋଟିନ ଖାଇବାକୁ ଦେଇ ଦେଖିଲେ ଯେ ସେମାନଙ୍କ ଜୀବସାର-କ ଅଭାବ ଦୂର ହୋଇଯାଉଛି । ତେଣୁ ସେ ଏହାକୁ ଜୀବସାର-କ କଳ୍ପ (Pro-vitamin) ନାମ ଦେଲେ । ଏହା ପଦ୍ଧତ ଜୀବସାର-କ

ନୁହେଁ; କିନ୍ତୁ ଏହାର ସମଗୋତ୍ରୀୟ ହୋଇଥିବାରୁ ଶରୀର ଭିତରକୁ ଗଲେ ଏହା ଜୀବସାର କ ର ରୂପ ଧାରଣ କରେ ।

ଜୀବସାର-କ ଭଳି ଜୀବସାର-କ, ନାମକ ଆଉ ଏକ ଜୀବସାର ଅଛି । ଜୀବସାର-କ ସାମୁଦ୍ରିକପ୍ରାଣୀର କଲିଜାରେ ଥିଲାବେଳେ ଜୀବସାର-କ, ମଧୁର ଜଳରେ ଥିବା ମାଛ କଲିଜାରେ ଥାଏ । ଏହି ଜୀବସାର-କ, ଜୀବସାର-କ ଭଳି ଦକ୍ଷ ନୁହେଁ । ଏହା ଜୀବସାର-କ ର ମାତ୍ର ଏକ ତୃତୀୟାଂଶ ସକ୍ରିୟ ।

**ଜୀବସାର 'କ'ର କାର୍ଯ୍ୟ—**

ଏହା ଆମର ଦୃଷ୍ଟିଶକ୍ତିକୁ ସୁସ୍ଥ ରଖିବାରେ ପ୍ରଧାନ ଭୂମିକା ଗ୍ରହଣ କରେ । ଆମ ଶରୀରର ଚର୍ମ, ଶ୍ଳୈଷ୍ମିକ ଝିଲ୍ଲୀର ସୁସ୍ଥ ଅଭିବୃଦ୍ଧିରେ ସାହାଯ୍ୟ କରେ । ଏହା ଆମ ଶରୀରର ଅଭିବୃଦ୍ଧି ବିଶେଷତଃ କଙ୍କାଳୀୟ ଅଭିବୃଦ୍ଧିରେ ବିଶେଷ ଭାବରେ ଭାଗ ନିଏ । ଆମ ଶରୀରକୁ ବାହ୍ୟ ଜୀବାଣୁ ଆକ୍ରମଣରୁ ରକ୍ଷା କରି ସୁସ୍ଥ ରଖେ ।

ଜୀବସାର-କ ଗରମ ଜଳରେ ସହଜରେ ବିନଷ୍ଟ ହୁଏନି । କିନ୍ତୁ ଅମ୍ଳଜାନ ଉପସ୍ଥିତିରେ ଏହା ଜାରିତ ହୋଇ ନଷ୍ଟ ହୋଇଯାଏ । ତୀବ୍ର ଆଲୋକର ଉପସ୍ଥିତିରେ ମଧ୍ୟ ଏହା ନଷ୍ଟ ହୋଇଯାଏ । ସେଥିପାଇଁ ଜୀବସାର-କ ଥିବା ଔଷଧ ବାଦାମୀରଙ୍ଗ ବୋତଲରେ ରଖାଯାଏ । ଖାଦ୍ୟ ପଦାର୍ଥ ରାନ୍ଧିଲା ବେଳେ ଅଧିକ ସମୟ ଧରି ଖୋଲା ରାନ୍ଧିଲେ ଜୀବସାର-କ ନଷ୍ଟ ହୋଇଯାଏ । ଜୀବସାର-କ ଆମ ଶରୀରରୁ ସହଜରେ ନିଷ୍କାସିତ ହୋଇଯାଏନି । ଏହା ଆମ ଦେହରେ ତେର ଦିନ ପର୍ଯ୍ୟନ୍ତ ରହିପାରେ । ଆମ ଯକୃତ ହାରାହାରି ୨-୩ ଲକ୍ଷ ଇଉନିଟ୍ ଜୀବସାର-କ ସାଇତି ରଖିପାରେ ଓ ଆବଶ୍ୟକାନୁସାରେ ଶରୀରକୁ ଯୋଗାଏ ।

## ଜୀବସାର-କ ଅଭାବରେ କି କି ରୋଗ ହୁଏ ?

ଏହି ଜୀବସାରର ଅଭାବ ହେଲେ ଆମର ତେର ପ୍ରକାର ରୋଗ ହୁଏ । ସେହିସବୁ ରୋଗ ଭିତରୁ ଅନ୍ଧାରକଣା ରୋଗ ଗୋଟିଏ । ଯେଉଁମାନଙ୍କୁ ଅନ୍ଧାରକଣା ରୋଗ ହୋଇଥାଏ ସେମାନେ ଅଳ୍ପ ଆଲୋକରେ କିଛି ଦେଖି ପାରନ୍ତି ନାହିଁ । ଅଳ୍ପ ଆଲୁଅରେ ସେମାନେ ଯିବା ଆସିବା କରି ପାରନ୍ତିନି ବା ମଟରଗାଡ଼ି ଚଳାଇ ପାରନ୍ତିନି । ଖାଲି ସେତିକି ନୁହେଁ, ଜୀବସାର୍-କ ଅଭାବ ହେଲେ ଦୃଷ୍ଟିଶକ୍ତିରେ ମଧ୍ୟ ବାଧା ପଡ଼େ । ଜୀବସାର୍-କ ଥିବା ଖାଦ୍ୟ ଖାଇଲେ ଏ ରୋଗ ଦୂର ହୋଇଯାଏ । ପିଲାମାନଙ୍କର ଦୃଷ୍ଟିଶକ୍ତି ଭଲ ହେବାପାଇଁ ହେଲେ ଜୀବସାର୍-କ ଥିବା ଖାଦ୍ୟ ସେମାନଙ୍କୁ ଖାଇବାକୁ ଦେବା ଦରକାର ।

ଜୀବସାର-କ ଅଭାବରୁ ଆମର ଶ୍ଳୈଷ୍ମିକ ଝିଲ୍ଲୀର ଅବନତି ଘଟେ, ଆଖିର ଜ୍ୟୋତି କମିଯାଏ । ଚକ୍ଷୁରେ ଏକ ପ୍ରକାର ଗୁରୁତର ରୋଗ ଦେଖାଦିଏ, ଆଖିରେ ଘା ଭଳି ଏକ ରୋଗ ହୁଏ । ଫଳରେ କନୀନିକା ନଷ୍ଟ ହୋଇଯାଇ ମଣିଷ ଅନ୍ଧ ହୋଇଯାଏ । ବେଳେ ବେଳେ ଜୀବସାର-କ ଅଭାବରୁ ଆଖିର ଧଳା ଅଂଶରେ ଧୂସର ରଙ୍ଗର ଏକ ବିନ୍ଦୁ ଦେଖାଦିଏ, ଯାହା ଆଖିର ଜ୍ୟୋତି ହ୍ରାସ ପାଇଁ ଦାୟୀ ।

ଜୀବସାର-କ ର ଅଭାବରେ ହାତ କହୁଣୀ ଓ ଗୋଡ଼ ଆଣ୍ଠୁ ଓ ଅନ୍ୟ ସ୍ଥାନରେ ଚମ ଶୁଖିଲା ଓ ଆବୁଡ଼ା ଖାବୁଡ଼ା ହୋଇଯାଏ । ଏହା କେତେକ ଜାଗାରେ ବେଙ୍ଗ ପିଠିଆ ହୋଇ ଉଚ୍ଚ ନୀଚ ଦିଶେ, ଚମ ଉପରେ ଗୋଟି ଗୋଟି ହୋଇ ବାହାରିଥିବାର ଦେଖାଯାଏ । ଜୀବସାର୍-କ ଖାଇଲେ ଏ ରୋଗ ଦୂର ହୋଇଯାଏ ।

ଜୀବସାର-କ ଆମ ଶରୀରର ରୋଗ ପ୍ରତିରୋଧୀ କ୍ଷମତା ବଢ଼ାଏ, ଶରୀରର ଯଥାଯଥ ଅଭିବୃଦ୍ଧିରେ ସାହାଯ୍ୟ କରେ । ପିଲ୍ଲମାନଙ୍କର ଜୀବସାର୍-କ ର ଅଭାବ ହେଲେ ସେମାନଙ୍କ ଶରୀର ଭଲଭାବରେ ବଢିପାରେନ । ଟଟକା ଶାଗ, ପନିପରିବା, ଫଳମୂଳରେ ଯେଉଁ କେରୋଟିନ ଥାଏ, ତାହା ଆମ ଖାଦ୍ୟରେ ଶରୀର ଭିତରକୁ ଗଲେ ଏହା ଜୀବସାର୍-କ ରେ ପରିଣତ ହୁଏ । କାରଣ ଜୀବସାର୍-କ ର ରାସାୟନିକ ସଂରଚନା କେରୋଟିନର ରାସାୟନିକ ସଂରଚନା ଭିତରେ ଢ଼େର ସାମଞ୍ଜସ୍ୟ ରହିଛି । ଶରୀର ଭିତରେ କେରୋଟିନ ଖୁବ୍ ସୁବିଧାରେ ଜୀବସାର୍-କ ରେ ପରିଣତ ହୋଇଯାଏ, ତେଣୁ ଆମ ଦେଶର ଗରୀବ ଲୋକେ ଯେଉଁମାନେ ଆର୍ଥିକ ଦୁରବସ୍ଥା ହେତୁ ଲହୁଣୀ, ଦୁଧ, ଘିଅ ଅଣ୍ଡା ଆଦି ଖାଇ ପାରନ୍ତିନ, ସେମାନେ ଏହି ଶାକସବଜ ଫଳମୂଳ ଖାଇ ଜୀବସାର୍-କ ଅଭାବ ଦୂର କରିପାରନ୍ତି । ଆମ ଶରୀର ଯେତିକ ପରିମାଣର ଜୀବସାର୍-କ ଦରକାର କରେ, ତାହାର ୪-୬ ଗୁଣ କେରୋଟିନ ଖାଇଲେ ଆମେ ଆବଶ୍ୟକୀୟ ଜୀବସାର୍-କ ପାଇପାରୁଁ । ଗୋଟିଏ ମାଇକ୍ରୋଗ୍ରାମ ଜୀବସାର୍-କ ର ପ୍ରଭାବ, ଆମ ଶରୀରରେ ଯେତିକ, ୪-୬ ମାଇକ୍ରୋଗ୍ରାମ କେରୋଟିନ୍‌ର ପ୍ରଭାବ ପ୍ରାୟ ସେତିକ । ତେଣୁ ଶାକସବଜ ଫଳମୂଳରୁ ଜୀବସାର୍-କ ପାଇବାକୁ ହେଲେ ଆମକୁ ଅଧିକ ପରିମାଣର ସେସବୁ ଖାଦ୍ୟ ଖାଇବାକୁ ପଡ଼ିବ । ଆମ ଶରୀରକୁ ଯଦି ଅଧିକ ପରିମାଣର ଜୀବସାର୍-କ ବା କେରୋଟିନ ଯାଏ, ତେବେ ଆମ ଯକୃତ ସେ ସବୁ ଅଧିକା ଅଂଶକୁ ସାଇତି ରଖେ । ଏହି ସାଇତିବା ଛଅ ମାସରୁ ଦଶମାସ ପର୍ଯ୍ୟନ୍ତ ରହିପାରେ ।

**ଆମ ଶରୀରରେ ଜୀବସାର-କ ର ଆବଶ୍ୟକତା କେତେ ?—**

ପୂର୍ଣ୍ଣବୟସ୍କ ପୁରୁଷ ବା ସ୍ତ୍ରୀ ଦିନକୁ ହାରାହାରି ୭୫୦ ମାଇକ୍ରୋଗ୍ରାମ୍ ଜୀବସାର-କ ଦରକାର କରନ୍ତି । ଗର୍ଭବତୀ ମହିଳା ଓ ଶିଶୁମାନଙ୍କୁ ସ୍ତନ୍ୟ ଖୁଆଉଥିବା ମହିଳାମାନେ ହଜାରେରୁ ଅଧିକ ମାଇକ୍ରୋଗ୍ରାମ ଜୀବସାର-କ ଦରକାର କରନ୍ତି । ଗୋଟିଏ ଗୋଟିଏ ମାଇକ୍ରୋଗ୍ରାମ୍ ହେଉଛି ଗୋଟିଏ ମିଲିଗ୍ରାମ୍‌ର ହଜାରେ ଭାଗରୁ ଭାଗେ । ଯେତେବେଳେ ଜୀବସାର-କ ଅଭାବ ଜନିତ ରୋଗ ଦେଖାଦିଏ, ସେତେବେଳେ ଦିନକୁ ୧୦,୦୦୦—୫୦,୦୦୦ ମାଇକ୍ରୋଗ୍ରାମ ପର୍ଯ୍ୟନ୍ତ ଜୀବସାର-କ ଦିଆଯାଇପାରେ ।

**ଜୀବସାର-କର ଅଧିକ୍ୟ ହେଲେ କ'ଣ ହୁଏ ?**

ଜୀବସାର-କ ଶରୀରରେ ଅଧିକ ହେଲେ ଶରୀର ଉପରେ ପ୍ରତିକୂଳ ପ୍ରଭାବ ପକାଏ । ଏଥିଯୋଗୁଁ କେତେପ୍ରକାର ରୋଗର ଲକ୍ଷଣ ଦେଖାଦିଏ । ମୁଣ୍ଡ ବଥାଇବା, ଏନୋରେକ୍‌ସିଆ, ଚମ କୁଣ୍ଡାଇ ହେବା, ଚମ ଶୁଖିଲା ଦିଶିବା, ଯକୃତ ବଢ଼ିଯିବା ଆଦି କେତେକ ରୋଗ ଦେଖାଦିଏ । ଜୀବସାର-କ ଖାଇବା ବନ୍ଦ କରିଦେଲେ ଏ ରୋଗ ସବୁ ଦୂର ହୋଇଯାଏ । ନିମ୍ନଲିଖିତ ଖାଦ୍ୟ ପଦାର୍ଥରେ ଜୀବସାର-କ ଥାଏ ।

**ବିଭିନ୍ନ ଜାତିର ଖାଦ୍ୟରେ ଥିବା ଜୀବସାର-କର ପରିମାଣ**

| କ୍ର: ସଂ ଖାଦ୍ୟର ନାମ | ପ୍ରତି ଶହେଗ୍ରାମରେ କେତେ ମାଇକ୍ରୋଗ୍ରାମ ଥାଏ ତାହାର ପରିମାଣ |
|---|---|
| ୧ । ହାଲିବୁଟ ମାଛ ଯକୃତ ତେଲ | ୭୦୦,୦୦୦-୧୦୦୦,୦୦୦ |
| ୨ । କଡ଼ ଯକୃତ ତେଲ | ୧୦,୦୦୦-୧୦୦୦,୦୦ |

| | |
|---|---|
| ୩ । ମଗରମାଛ ଯକୃତ ତେଲ | ୯୦୦୦-୧୬,୦୦୦ |
| ୪ । ଛେଳ ବା ମେଣ୍ଢା କଲଜା | ୬୦୦୦-୧୦,୦୦୦ |
| ୫ । ଲହୁଣୀ | ୭୨୦-୧୨୦୦ |
| ୬ । ଗଟକା ଘିଅ | ୬୦୦-୭୦୦ |
| ୭ । ଅଣ୍ଡା | ୩୦୦-୪୦୦ |
| ୮ । ମାଛ | ୩୦-୪୦ |
| ୯ । ଗୁଣ୍ଡ ଦୁଧ | ୪୦୦-୪୫୦ |
| ୧୦ । ଛେନା | ୨୦୦-୪୦୦ |
| ୧୧ । ଗାଈଦୁଧ | ୫୦-୬୦ |
| ୧୨ । ମଈଷ ଦୁଧ | ୬୦-୭୦ |
| ୧୩ । ତେଲଥିବା ମାଛ | ୩୦-୪୦ |
| ୧୪ । ଲଲ୍ ତାଳ ତେଲ | ୪୧୬୭-୫୫୦୦ |
| ୧୫ । ବନ୍ଧାକୋବି | ୨୧୭ |
| ୧୬ । ସଜନାଶାଗ | ୧୨୮୩ |
| ୧୭ । ମୂଳା ଶାଗ | ୭୫୦ |
| ୧୮ । ପୋଈଶାଗ | ୬୦୦ |
| ୧୯ । ପୋହଳା | ୩୦୦ |
| ୨୦ । ଧଣିଆପତ୍ର | ୧୧୬୬-୧୩୩୩ |
| ୨୧ । ଗାଜର | ୨୧୭-୪୩୪ |
| ୨୨ । ପାଚିଲା ହଳଦିଆ କଖାରୁ | ୧୦୦-୧୨୦ |
| ୨୩ । ପଣସ | ୫୪ |
| ୨୪ । ପାଚିଲା ଆମ୍ବ | ୫୦୦ |
| ୨୫ । କମଳା ଲେମ୍ବୁ | ୩୫ |
| ୨୬ । ପାଚିଲା ବଳଷ୍ଠ ବାଇଗଣ | ୩୨ |

## ତୃତୀୟ ଅଧ୍ୟାୟ

# ଜୀବସାର-ଖ ସମୂହ

## (Vitamin-B Complex)

ଜୀବସାର-ଖ ଅନ୍ୟମାନଙ୍କ ଭଳି ଗୋଟିଏ କିମ୍ବା ଦୁଇଟିର ମିଶ୍ରଣ ନୁହେଁ । ଏଥିରେ ଅନ୍ତ କମରେ ଏଗାର ଗୋଟି ସଦସ୍ୟ ଅଛନ୍ତି । ସେସବୁ ସଦସ୍ୟ ହେଲେ—

୧ । ଜୀବସାର ଖ-୧ ବା ଥାୟାମିନ
୨ । ଜୀବସାର ଖ-୨ ବା ରାଇବୋଫ୍ଲେବିନ୍
୩ । ନିଆସିନ ଓ ନିଆସିନ ଏମାଇଡ଼୍
୪ । ଜୀବସାର ଖ-୬ ବା ପିରିଡ଼କସିନ
୫ । ପେଣ୍ଟୋଥେନିକ ଅମ୍ଳ
୬ । ଫୋଲିକ୍ ଅମ୍ଳ
୭ । ବାୟୋଟିନ୍
୮ । କୋଲିନ୍
୯ । ପାରାଏମିନୋ ବେନଜଇକ ଅମ୍ଳ
୧୦ । ଆୟୁନୋସିଟଲ
୧୧ । ଜୀବସାର ଖ-୧୨

ଏସବୁକୁ ଗୋଟିଏ ଦଳରେ ରଖିବାର ଉଦ୍ଦେଶ୍ୟ ସେସବୁ ସମଜାତୀୟ ଖାଦ୍ୟରେ ଥାଆନ୍ତି । ଗୋଟିଏ ଗୋଟିଏ ଖାଦ୍ୟରୁ

ଏଥିରୁ ବିଭିନ୍ନ ସଦସ୍ୟ ଅଳ୍ପବେଶି ମାତ୍ରାରେ ମିଳିଥାନ୍ତି । ପ୍ରତ୍ୟେକର ଅଭାବରେ ଭିନ୍ନ ଭିନ୍ନ ପ୍ରକାର ରୋଗ ହେବାର ଦେଖାଯାଏ । ଏଗୁଡ଼ିକ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଲୋକଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା ।

## ଜୀବସାର ଖ-୧

**ଆବିଷ୍କାର :—**

ଏହାର ଅନ୍ୟ ନାମ ହେଉଛି ଥାୟାମିନ୍ । ଏହା ଏକ ଏମିନ ହୋଇଥିବାରୁ ଓ ଶରୀର ପାଇଁ ଅତ୍ୟାବଶ୍ୟକ ଥିବାରୁ ଏହାକୁ ଦେଖି କାସିମିର ଫଙ୍କ ଭିଟାମିନର ନାମକରଣ କରିଥିଲେ । ଏହାର ଅଭାବ ବେରିବେରି ରୋଗର କାରଣ ବୋଲି ୧୮୮୫ ମସିହାରେ ଜାପାନୀ ବୈଜ୍ଞାନିକ ଟାକାକି ସନ୍ଦେହ କରିଥିଲେ । ଖାଦ୍ୟପଦାର୍ଥ ବଦଳାଇ ସେ ବେରିବେରି ରୋଗକୁ ଦୂରକରି ପାରିଥିଲେ । ୧୮୮୭ ମସିହାରେ ଓଲନ୍ଦାଜ ବୈଜ୍ଞାନିକ ଆଇଜାକ୍ ମ୍ୟାନ୍ କୁକୁଡ଼ାଛୁଆମାନଙ୍କୁ ସଫା କାଣ୍ଡିଆ ଚାଉଳ ଖାଇବାକୁ ଦେଇ ସେମାନଙ୍କ ଶରୀରରେ ବେରିବେରି ରୋଗ ସୃଷ୍ଟି କରି ପାରିଥିଲେ । ବେରିବେରି ରୋଗ ହୋଇଥିବା କୁକୁଡ଼ା-ଛୁଆମାନଙ୍କୁ ସେ ଯେତେବେଳେ କୁଣ୍ଡାଧୂଆ ପାଣି ଖାଇବାକୁ ଦେଲେ ସେମାନଙ୍କ ରୋଗ ଭଲ ହୋଇଗଲା । ସେ ସେଥିରୁ ପ୍ରମାଣ କଲେ ଯେ କୁଣ୍ଡା ଦେହରେ ଏମିତି କିଛି ପଦାର୍ଥ ଅଛି, ଯାହା ବେରିବେରି ରୋଗକୁ ଭଲ କରିଦେଇ ପାରୁଛି । ସେ ତାଙ୍କର ଏହି ଆବିଷ୍କାର ପାଇଁ ୧୯୨୯ ମସିହାରେ ନୋବେଲ ପୁରସ୍କାର ଲାଭ କଲେ । ୧୯୨୬ ମସିହାରେ ଜାନସେନ ଓ ଡୋନାଥ ନାମକ ବୈଜ୍ଞାନିକ ଦ୍ୱୟ କୁଣ୍ଡା ଦେହରୁ ବିଶୁଦ୍ଧ ଜୀବସାର ଖ-୧

ବା ଥାୟାମିନ୍ ଅଲଗା କଲେ । ୧୯୩୧ ମସିହାରେ ଊଇଣ୍ଡସ ଓ ତାଙ୍କ ସହକର୍ମୀମାନେ ଇଷ୍ଟରୁ ଜୀବସାର ଖ-୧ ବିଶୁଦ୍ଧ ଦାନାଦାର ପଦାର୍ଥ ଭାବରେ ଅଲଗା କଲେ । ଏହି ଜୀବସାରଟି ଜଳରେ ଦ୍ରବଣୀୟ, ଉତ୍ତାପ ପାଇଲେ ନଷ୍ଟ ହୋଇଯାଏ । ଅଧିକ ପରିମାଣରେ ଏହି ଜୀବସାର ଖାଇଲେ ଏହା ଶରୀରରେ ସଞ୍ଚିତ ହୋଇ ନ ପାରି ପରିସ୍ରାରେ ବାହାରିଯାଏ ।

### ଜୀବସାର ଖ-୧ର କାର୍ଯ୍ୟ

ଶରୀରରେ ଶ୍ୱେତସାରର ଜାରଣରେ ଏହା ସାହାଯ୍ୟ କରେ । ଭଲ ହଜମ ପ୍ରକ୍ରିୟା ଓ ଭୋକ ହେବା ପାଇଁ ଏହା ଆବଶ୍ୟକ । ଏହି ଜୀବସାର ମସ୍ତିଷ୍କ ଓ ସ୍ନାୟୁର କାର୍ଯ୍ୟକାରୀ ଶକ୍ତିକୁ ଠିକ୍ ରଖେ ।

### ଏହାର ଅଭାବ ହେଲେ କଣ ହୁଏ ?

ଏହି ଜୀବସାରର ଅଭାବ ହେଲେ କ୍ଷୁଧା କମିଯାଏ, କିଛି ଖାଇବାକୁ ଇଚ୍ଛା ହୁଏନି । ଏହାର ଅଭାବ ଲାଗି ରହିଲେ ବେରି-ବେରି ରୋଗ ହୁଏ । କିଛିବର୍ଷ ପୂର୍ବେ ଏହି ରୋଗ ଦକ୍ଷିଣପୂର୍ବ ଏସୀୟ ଦେଶମାନଙ୍କରେ ଅଧିକ ଦେଖା ଯାଉଥିଲା, କାରଣ ସେମାନେ ସଫା କାଣ୍ଡିଆ କଳ ଚାଉଳ ଖାଉଥିଲେ । ଏହି ରୋଗ ସାଧାରଣତଃ ଦୁଇପ୍ରକାରର ଦେଖାଯାଏ, ଯଥା : ଶୁଖିଲା ବେରି-ବେରି ଓ ଆର୍ଦ୍ର ବେରିବେରି । ଏହାଛଡ଼ା ଶିଶୁ ବେରିବେରି ମଧ୍ୟ ଦେଖାଯାଏ । ଯେଉଁମାନେ ଆମ ଦେଶ ଭଳି ଅଧିକ ଶ୍ୱେତସାର ଖାଆନ୍ତି ସେମାନଙ୍କୁ ସାଧାରଣତଃ ଏହି ରୋଗ ଧରେ ।

ଆର୍ଦ୍ର ବେରିବେରିରେ ଗୋଡ଼ହାତ ଫୁଲିଯାଏ । ମୁହଁ, ଦେହ ମଧ୍ୟ ଫୁଲିଲା ଫୁଲିଲା ଭଳି ଜଣାପଡ଼େ । ଚୁଟି ଥରିବା;

ନିଶ୍ୱାସ ବନ୍ଦ ହୋଇଯିବା ଭଳି ଜଣାପଡ଼େ । ବେକରେ ଶିରାସବୁ ଫୁଲିଉଠେ । ରକ୍ତଗ୍ରତିରେ ଗୋଳମାଳ ଦେଖାଯାଏ । ହୃଦଯନ୍ତ୍ର ଦୁର୍ବଳ ହୋଇଯାଏ । ବେଳେବେଳେ ଏଥିଯୋଗୁଁ ହୃଦଯନ୍ତ୍ର ବନ୍ଦ ହୋଇଗଲେ ରୋଗୀ ମରିଯାଏ ।

ଶୁଖିଲା ବେରିବେରିରେ ମାଂସପେଶୀ ଦୁର୍ବଳ ହୋଇଯାଏ । ଗୋଡ଼ ହାତ ସରୁ ହୋଇଯାଏ । କିଛି କାମଦାମ କରିବାକୁ ମନ ହୁଏନି । ଚାଲିବା ବେଳେବେଳେ କଷ୍ଟକର ହୋଇପଡ଼େ । ବାଡ଼ି ଧରି ଚାଲିବାକୁ ପଡ଼େ । ଏହି ରୋଗ ଅଧିକଦିନ ଲାଗି ରହିଲେ ରୋଗୀ ବିଛଣାରେ ପଡ଼ି ରହିବାକୁ ଭଲପାଏ । ଏହି ରୋଗର ଯଦି ବିହିତ ଚିକିତ୍ସା କରା ନଯାଏ ତେବେ ରୋଗୀ ମରିଯାଏ । ଏହି ରୋଗରେ ବେଳେବେଳେ ମସ୍ତିଷ୍କ ଖରାପ ହୋଇଯାଏ । ଏହି ରୋଗରେ ସ୍ନାୟୁ ଦୁର୍ବଳତା ଦେଖାଦିଏ । ରକ୍ତବାହୀ ଶିରା, ଓ ଧମନୀ ଦୁର୍ବଳ ହୋଇଯାଏ । ସ୍ନାୟୁ ପ୍ରଦାହ ଦେଖାଦିଏ ।

ଶିଶୁ ବେରିବେରି ରୋଗରେ ପିଲାମାନେ ଅସ୍ଥିରତା ଓ ଚିଡ଼ଚିଡ଼ିଆ ପ୍ରକୃତି ଦେଖାଇଥାନ୍ତି । ବେଳେବେଳେ ବାନ୍ତି ହୁଏ । ଏହି ରୋଗ କ୍ରମାଗତ ଲାଗି ରହିଲେ ହୃଦଯନ୍ତ୍ର ବନ୍ଦ ହେଉ ଶିଶୁ ମରିଯାଏ ।

**ମଣିଷ ପାଇଁ ଏହାର ଆବଶ୍ୟକତା**

ଜଣେ ସାଧାରଣ ସୁସ୍ଥ ପୁରୁଷ ଦିନକୁ ୧·୨ରୁ ୨ ମିଲିଗ୍ରାମ୍ ପର୍ଯ୍ୟନ୍ତ ଜୀବସାର ଖ-୧ ଦରକାର କରେ । ଗର୍ଭବତୀ ମହିଳା, କ୍ଷୀର ଖୁଆଉଥିବା ମହିଳା ଦିନକୁ ୨ ମିଲିଗ୍ରାମ୍ ଦରକାର କରନ୍ତି । ପିଲାମାନେ ବୟସାନୁସାରେ ୦.୬ ମିଲିଗ୍ରାମ୍ ରୁ ୧·୫

ମିଲିଗ୍ରାମ୍ ପର୍ଯ୍ୟନ୍ତ ଦରକାର କରିଥାନ୍ତି । ଖାଦ୍ୟକୁ ଅଧିକ ସମୟ ଧରି ରାନ୍ଧିଲେ ଏହି ଜୀବସାର ନଷ୍ଟ ହୋଇଯାଏ ।

**ଏହାର ଆଧିକ୍ୟ ହେଲେ କଣ ହୁଏ ?**

ଜୀବସାର ଖ-୧ ବେଶି ପରିମାଣରେ ଖାଇଲେ ଶରୀରର ସେମିତି କିଛି କ୍ଷତି ହେବାର ଜଣାଯାଇନି । ତା'ଛଡ଼ା ବଟିକା ଭାବରେ ଅଧିକ ଖାଇଲେ ସେମିତି କିଛି ଖରାପ ପ୍ରଭାବ ଜଣାପଡ଼ିନି । ଜୀବସାର ଖ-୧ ନିମ୍ନଲିଖିତ ଖାଦ୍ୟପଦାର୍ଥରେ ଥାଏ ।

**ଜୀବସାର ଖ-୧ ଥିବା ଏକ ତାଲିକା**

| କ୍ର:ସଂ. | ଖାଦ୍ୟର ନାମ | ଶହେ ଗ୍ରାମ୍‌ରେ ଜୀବସାର ଖ-୧ର ପରିମାଣ ମିଲିଗ୍ରାମ୍ ହିସାବରେ |
|---|---|---|
| ୧ । | ଶୁଖିଲା ଇଷ୍ଟ | ୩-୬ |
| ୨ । | କୁଣ୍ଡା | ୨-୩ |
| ୩ । | ଗହମ ଗଜା | ୧.୦-୨.୫ |
| ୪ । | ଗୋଟା ସାରା ଗହମ, ମାଣ୍ଡିଆ | .୪-.୬ |
| ୫ । | ବୁଟ, ମଟର | .୪୫-.୬ |
| ୬ । | ସୋୟାବିନ୍, ଚିନାବାଦାମ, ଲଙ୍କାବାଦାମ | .୬୫-୧.୧ |
| ୭ । | ଛେଳି କଲିଜା | .୩-.୪ |
| ୮ । | ପନିପରିବା | .୦୪-.୧୫ |
| ୯ । | ଫଳ | .୦୨-.୦୫ |
| ୧୦ । | ଦୁଧ | .୦୫ |
| ୧୧ । | ମାଛ, ମାଂସ | .୧୧-.୧୮ |
| ୧୨ । | ଅଣ୍ଡା | .୧୦ |

# ଜୀବସାର-ଖ-୨

**ଆବିଷ୍କାର :—**

ଏହି ଜୀବସାରର ଅନ୍ୟନାମ ହେଉଛି ରାଇବୋଫ୍ଲେବିନ୍ । ୧୯୨୬ ମସିହାରେ ବୈଜ୍ଞାନିକ ଗୋଲଡ଼ବର୍ଗର ଓ ତାଙ୍କ ସହକର୍ମୀମାନେ ଆବିଷ୍କାର କଲେ ଯେ ଇଷ୍ଟକୁ ଉଚ୍ଚ ଗ୍ରୁପ ଓ ତାପରେ ସିଦ୍ଧ କରି ପେଲଗ୍ରା ରୋଗୀକୁ ଖାଇବାକୁ ଦେଲେ ପେଲଗ୍ରା ରୋଗ ଭଲ ହୋଇଯାଉଛି । ଏହି ଗ୍ରୁପ ଓ ତାପରେ ଇଷ୍ଟରେ ଥିବା ଥାୟାମିନ ରହି ନପାରି ନଷ୍ଟ ହୋଇଯାଏ । ତା'ହେଲେ ଇଷ୍ଟରେ ଆଉ ଏକ ପଦାର୍ଥ ଅଛି, ଯାହାକି ଅଧିକ ଗ୍ରୁପ ଓ ତାପରେ ନଷ୍ଟ ହୁଏନି ଓ ଏହା ପେଲଗ୍ରା ରୋଗକୁ ଦୂର କରିପାରେ । ଏ ଦିଗରେ ସେମାନେ ଅଧିକ ଗବେଷଣା କରି ଆବିଷ୍କାର କଲେ ଯେ ଇଷ୍ଟରେ ଆଉ ଏକପ୍ରକାର ଜୀବସାର ଅଛି, ଯାହାକି ଥାୟାମିନଠାରୁ ପୂରାପୂରି ଅଲଗା । ସେମାନେ ପ୍ରଥମେ ଏହାର ନାମଦେଲେ ଜୀବସାର ଖ-୨ । ପରେ ଏହାର ସଂରଚନା ଜଣାପଡ଼ିବାରୁ ଏହାର ନାମ ଦିଆଗଲା ରାଇବୋ-ଫ୍ଲେବିନ । ଦୁଧ, ଅଣ୍ଡା, କଲିଜାରୁ ଏହାକୁ ବିଶୁଦ୍ଧ ଭାବରେ ଅଲଗା କଲେ ନୋବେଲ ପୁରସ୍କାର ବିଜେତା ପଲ କେରର, କୁନ୍ ଓ ଅନ୍ୟମାନେ । ଜୀବସାର ଖ-୨ ଅଭାବ ଥିବା ଖାଦ୍ୟପଦାର୍ଥରେ ଏହି ରାଇବୋଫ୍ଲେବିନ୍‌କୁ ଯୋଗ କରି ମୂଷାମାନଙ୍କୁ ଖାଇବାକୁ ଦେଲେ ସେମାନଙ୍କର ଶରୀର ବୃଦ୍ଧି ତ୍ୱରାନ୍ୱିତ ହୁଏ ।

## ଜୀବସାର—ଖ-୨ର କାର୍ଯ୍ୟ

ଏହା ଶରୀରରେ ଜାରଣ ପ୍ରକ୍ରିୟା ଓ ନିଶ୍ୱାସ ପ୍ରଶ୍ୱାସ ସମ୍ପାଦନରେ ଏକ କୋଏନଜାଇମ୍ ଭଳି କାର୍ଯ୍ୟ କରେ । ପୁଷ୍ଟିସାର, ସ୍ନେହସାର ଓ ଶ୍ୱେତସାରର ବିପାକରେ ପ୍ରଧାନ ଭୂମିକା ଗ୍ରହଣ କରେ ।

### ଏହାର ଅଭାବ ହେଲେ କଣ ହୁଏ ?

ଏହି ଜୀବସାରର ଅଭାବ ହେଲେ କଳ ଛିଣ୍ଡା ରୋଗ ହୁଏ । କଳର ଦୁଇପାଖ ଛିଣ୍ଡିଯାଇ ଧଳା ଧଳା ଦିଶେ । ଅଣ୍ଡକୋଷ ଉପରେ ଘା ହୁଏ । ଆଖିରେ ମଧ୍ୟ ଘା ହୁଏ । ଅଣ୍ଡକୋଷର ଉପରିଭାଗ କୁଣ୍ଡାଇ ହୁଏ । ଆଖିର କନୀନିକା ବା ଧଳା ଅଂଶ ନାଲି ପଡ଼ିଯାଏ, ତୀବ୍ର ଆଲୋକକୁ ଅନାଇଲେ କଷ୍ଟ ହୁଏ । ଜିଭରେ ମଧ୍ୟ ଘା ହୁଏ । ଚମର ସୁସ୍ଥ ରୂପ ବଦଳିଯାଏ, ଓଠ ମଳିନ ପଡ଼ିଯାଏ । କଳଛିଣ୍ଡା ହେଲେ ଭଲ ଭାବରେ ପାଟି ମେଲି ଆଁ କରି ହୁଏନି । ଜିଭରେ ଯେଉଁ ଘା ହୁଏ ଓ ନାଲି ପଡ଼ିଯାଏ, ତାହା ଖୁବ କଷ୍ଟ ଦିଏ । ଏହି ଜିଭଘାକୁ ମଧ୍ୟ ଭୁଣ୍ଡଘା ବୋଲି କହନ୍ତି । ଖାଦ୍ୟରେ ସାମାନ୍ୟ ରାଗ ଅଂଶ ଥିଲେ ପାଟି ଅତ୍ୟଧିକ ପୋଡ଼େ ଓ ଜ୍ୱାଳା କରେ । ବେଳେ ବେଳେ ଏହି ରୋଗୀମାନଙ୍କ ଆଖିକୁ ଭଲ ଦିଶେନି । ତୀବ୍ର ଆଲୋକକୁ ଅନାଇ ହୁଏନି । ଆଖିପତା ବେଳେବେଳେ ରଙ୍ଗ୍ ରଙ୍ଗ୍ ଜଣାପଡ଼େ । ଯେମିତିକି ଆଖିପତା ତଳେ ବାଲି ପଡ଼ିଯାଇଛି, ଖାଦ୍ୟ ପଦାର୍ଥର ଜୀର୍ଣ୍ଣ ପ୍ରକ୍ରିୟାରେ ଓ ଶରୀରକୁ ଅବଶୋଷଣ ପ୍ରକ୍ରିୟାରେ ରାଇବୋଫ୍ଲେଭିନ୍ ଭାଗ ନିଏ । ଏହା ଶରୀରରେ କେତେକ ଏନ୍‌ଜାଇମ୍ ସୃଷ୍ଟି କରିବାରେ ସାହାଯ୍ୟ କରେ ।

## ମଣିଷ ପାଇଁ ଏହାର ପରିମାଣ ଦୈନିକ କେତେ ହେବା ଦରକାର ?

ଜଣେ ସୁସ୍ଥ ଲୋକ ଦିନକୁ ହାରାହାରି ୧.୫-୨.୫ ମିଲିଗ୍ରାମ୍ ଦରକାର କରେ । ଗର୍ଭବତୀ ମହିଳାମାନେ ୧.୫-୨ ମିଲିଗ୍ରାମ ଦରକାର କରିଥାନ୍ତି । ରାଇବୋଫ୍ଲେବିନ୍‌କୁ ଗରମ କଲେ ଏହା ନଷ୍ଟ ହୁଏନି । ଏହା ଅମ୍ଳ ମାଧ୍ୟମରେ ମଧ୍ୟ ନଷ୍ଟ ହୁଏନି । କ୍ଷାର ମାଧ୍ୟମରେ ଗରମ କଲେ ନଷ୍ଟ ହୋଇଯାଏ । କେଉଁ କେଉଁ ଖାଦ୍ୟରେ ଜୀବସାର ଖ-୨ କେତେ ପରିମାଣରେ ଅଛି, ତହିଁର ଏକ ତାଲିକା ତଳେ ଦିଆଗଲା ।

### ଜୀବସାର ଖ-୨ ଥିବା ଖାଦ୍ୟର ଏକ ତାଲିକା

| କ୍ର:ସଂ: ଖାଦ୍ୟର ନାମ | ପ୍ରତି ଶହେଗ୍ରାମ୍ ଖାଦ୍ୟରେ କେତେ ମିଲିଗ୍ରାମ୍ ଜୀବସାର ଖ-୨ ଥାଏ |
|---|---|
| ୧ । ଛେଳି କଲିଜା | ୩-୪ |
| ୨ । ଶୁଖିଲା ଇଷ୍ଟ | ୩.୫-୪.୫ |
| ୩ । ଦୁଧ | .୧୫-.୨୦ |
| ୪ । ଅଣ୍ଡା | .୨୯-.୩୫ |
| ୫ । ମାଛ | .୨-.୩ |
| ୬ । ପୂର୍ଣ୍ଣ ଶସ୍ୟଦାନା | .୧୦-.୧୬ |
| ୭ । ଡାଲି ଜାତୀୟ ଖାଦ୍ୟ | .୨୧-.୩୨ |
| ୮ । ତୈଳବୀଜ ଓ ବାଦାମ | .୫-.୩୦ |
| ୯ । ସବୁଜ ଶାକ୍‌ସବଜି | .୧୫-.୩୦ |
| ୧୦ । ମୂଳଜାତୀୟ ପନିପରିବା | .୦୩-.୦୮ |
| ୧୧ । ଅନ୍ୟ ପନିପରିବା | .୦୩-.୧୨ |

# ନିଆସିନ୍

**ଆବିଷ୍କାର :—**

୧୯୨୨-୨୯ ମସିହା ଭିତରେ ଆମେରିକାର ବୈଜ୍ଞାନିକ ଗୋଲଡ଼ବର୍ଗର ଓ ତାଙ୍କର ସହକର୍ମୀମାନେ ପ୍ରତିପାଦନ କଲେ ଯେ, ମଣିଷମାନଙ୍କ ଠାରେ ହେଉଥିବା ପେଲଗ୍ରା ରୋଗ ପାଇଁ ରୋଗୀକୁ ଇଷ୍ଟ ବା କଲିଜା ଖାଇବାକୁ ଦେଲେ ରୋଗ ଭଲ ହୋଇଯାଏ । ୧୯୨୮ ମସିହାରେ ସେମାନେ ପ୍ରମାଣ କଲେ ଇଷ୍ଟକୁ ଗରମ ଜଳ ଦ୍ୱାରା ଉତ୍ତପ୍ତ କରି ତାର ଝୋଳକୁ ପେଲଗ୍ରା ରୋଗୀକୁ ଖାଇବାକୁ ଦେଲେ ପେଲଗ୍ରା ରୋଗ ଭଲ ହୋଇଯାଏ । ୧୯୩୭ ମସିହାରେ ଏଲଭେ ଜେମ ଯକୃତରୁ ଗୋଟିଏ ପ୍ରକାର ଦାନାଦାର ପଦାର୍ଥ ଅଲଗା କଲେ, ଯାହାକି ପେଲଗ୍ରା ରୋଗକୁ ଦୂର କରି ପାରୁଥିଲା । ସେ ଏହି ପଦାର୍ଥକୁ ନିକୋଟିନିକ ଅମ୍ଳ ବୋଲି ଚିହ୍ନଟ କଲେ । ଏହାର କ୍ଷୁଦ୍ର ନାମ ହେଉଛି ନିଆସିନ୍ ।

କାସିମିର ଫୁଙ୍କ ୧୯୧୨ ମସିହାରେ ଇଂଲଣ୍ଡରେ କୁଣ୍ଡାରୁ ନିକୋଟିନିକ୍ ଅମ୍ଳ ଅଲଗା କଲେ । ସେତେବେଳେ ସେମାନେ କୁଣ୍ଡାରୁ ବେରିବେରି ରୋଗ ନିରୋଧକ ପଦାର୍ଥ ଅଲଗା କରିବାକୁ ଚେଷ୍ଟା କରୁଥିଲେ । ବେରିବେରି ନିରୋଧକ ବାହାର କରୁକରୁ ପେଲଗ୍ରା ନିରୋଧକ ବାହାରି ପଡ଼ିଲା ।

୧୯୩୪ ମସିହାରେ ଓ୍ୱାରବର୍ଗ, ଅଏଲର ପ୍ରଭୃତି ବୈଜ୍ଞାନିକ-ମାନେ ନିକୋଟିନିକ୍ ଏସିଡ୍ ଏମାଇଡ୍ ନିଆସିନ୍ ଭଳି କାମ କରେ ବୋଲି ଆବିଷ୍କାର କଲେ । ଆମ ଶରୀରରେ କାର୍ଯ୍ୟ କରୁଥିବା କେତେପ୍ରକାର ଏନ୍ଜାଇମ୍ ଭିଆରେ ଏହା ଭାଗ ନିଏ । ଏହାର ଚଳିତ ନାମ ହେଉଛି ନିଆସିନାମାଇଡ୍ ।

ନାଆସିନ୍ ଆମ ଚର୍ମ, କ୍ଷୁଦ୍ରାନ୍ତ ନଳୀ ଓ ସ୍ନାୟୁମଣ୍ଡଳକୁ ସୁସ୍ଥ ଓ କାର୍ଯ୍ୟକ୍ଷମ ରଖିବା ଦିଗରେ କାର୍ଯ୍ୟ କରେ ଓ ଶରୀରରେ ଶ୍ୱେତସାର ଦହନରେ ସାହାଯ୍ୟ କରେ । ନାଆସିନାମାଇଡ୍ ଆମ ଶରୀରରେ କାର୍ଯ୍ୟ କରୁଥିବା ୩୫ ପ୍ରକାର ଏନ୍‌ଜାଇମ୍‌ର ପ୍ରସ୍ତୁତିରେ ସାହାଯ୍ୟ କରେ । ନାଆସିନ୍ ଖୁବ୍ ସୁବିଧାରେ ଆମ ଶରୀର ଭିତରେ ନାଆସିନାମାଇଡ୍‌କୁ ପରିବର୍ତ୍ତିତ ହୁଏ ।

## ଏହାର ଅଭାବ ଜନିତ ରୋଗ

ନାଆସିନ୍ ଅଭାବରେ ପେଲାଗ୍ରା ରୋଗ ହୁଏ । ଏହି ରୋଗ ହେଲେ ଚମ ଲାଲ ପଡ଼ି ପ୍ରଦାହ ହୁଏ । ଜିଭରେ ନାଲିପଡ଼ି ଘା ହୁଏ ଓ ଜଳାପୋଡ଼ା କରେ । ତରଳ ପତଳା ଝାଡ଼ା ହୁଏ । କେତେକ ରୋଗୀଙ୍କଠାରେ ମସ୍ତିଷ୍କ ବିକୃତି ଦେଖାଦିଏ । ଆମେରିକାର ଗରିବ ଲୋକମାନେ ଯେଉଁମାନେ କେବଳ ଶ୍ୱେତସାର ଖାଦ୍ୟ ଖାଆନ୍ତି, ମାଛ, ମାଂସ, ଅଣ୍ଡା ଆଦି ଖାଇବାକୁ ପାଆନ୍ତିନି, ସେମାନେ ଏ ରୋଗରେ ବେଶି ଆକ୍ରାନ୍ତ ହୁଅନ୍ତି । ୧୯୨୮ ମସିହାରେ ଏହି ପେଲଗ୍ରା ରୋଗରୁ ଆମେରିକାରେ ୭୦୦୦ ଲୋକ ମରିଥିଲେ । ନାଆସିନ୍‌ର ଆବଶ୍ୟକତା ପୂରଣ କରିବା ଫଳରେ ୧୯୪୭ ମସିହାରେ ମାତ୍ର ୮୦୪ ଜଣ ଲୋକ ମରିଥିଲେ ।

ଏହି ରୋଗ ହେଲେ ବାନ୍ତି ହୁଏ । ପତଳା ଝାଡ଼ା ଓ ଝାଡ଼ାରେ ନାଳ ଓ ରକ୍ତ ପଡ଼େ ।

ପେଲଗ୍ରା ରୋଗରେ ଚମ ଉପରେ ପୋଡ଼ିଗଲା ଭଳି ଘା ହୁଏ । ହାତ, ବାହୁର ପଛ ପାଖ, ଗୋଡ଼ର ପଛ ପାଖରେ ଲାଲ ରଙ୍ଗର ଘା ହୁଏ ଓ ଏହା ଫୁଲିଯାଏ । ସୂର୍ଯ୍ୟ କିରଣ ପଡ଼ିଲେ ଏହା ଆହୁରି ତୀବ୍ର ହୋଇଉଠେ ।

ପେଲଗ୍ରା ରୋଗରେ ଡ଼େଲଣ୍ୟୁମ ହୁଏ । ମାନସିକ ଅଶାନ୍ତି ବଢ଼ିଯାଏ । ଲୋକ ଚିଡ଼ଚିଡ଼ିଆ ହୋଇଯାଏ । ମନରୁ ସବୁ କଥା ଭୁଲିଯାଏ । ଏକାଗ୍ରତାର ଅଭାବ ଦେଖାଦିଏ । ମାନସିକ ଅବସାଦ ଏ ରୋଗର ଏକ ପ୍ରଧାନ ଲକ୍ଷଣ ।

ନିଆସିନ୍ ମିଳିବାର ପ୍ରଧାନ ଖାଦ୍ୟପଦାର୍ଥ ହେଉଛି ଶୁଖିଲା ଇଷ୍ଟ୍, କୁଣ୍ଡା, କଲିଜା ଓ ଚିନାବାଦାମ, ଗୋଟାସାରା ଶସ୍ୟ । ମାଛ, ମାଂସ, ଡାଲିଜାତୀୟ ଖାଦ୍ୟରେ ମଧ୍ୟ ଆବଶ୍ୟକ ପରିମାଣରେ ନିଆସିନ୍ ଥାଏ । ଆମେ ଯେଉଁ ମାଛ, ମାଂସ, ଡାଲିଜାତୀୟ ଖାଦ୍ୟ ଖାଉଁ, ସେଥିରେ ଟ୍ରିପଟୋଫେନ୍ ନାମକ ଏକ ଅତ୍ୟାବଶ୍ୟକୀୟ ଏମିନୋ ଅମ୍ଳ ଥାଏ । ଏହା ଆମ ଶରୀର ଭିତରେ ନିଆସିନରେ ପରିଣତ ହୁଏ । ହାରାହାରି ୬୦ ମିଲିଗ୍ରାମ ଟ୍ରିପ୍ଟୋଫେନ୍ ମାତ୍ର ଗୋଟିଏ ମିଲିଗ୍ରାମ ନିଆସିନ ଦିଏ । ତେଣୁ ନିଆସିନ୍ ଖାଦ୍ୟରେ ନ ଖାଇ ପ୍ରାଣୀଜ ପୁଷ୍ଟିସାର ଖାଇଲେ, ସେଥିରେ ଥିବା ଟ୍ରିପଟୋଫେନ୍‌ରୁ ଯଥେଷ୍ଟ ନିଆସିନ୍ ମନକୁମନ ତିଆରି ହୋଇଯାଏ । ତେଣୁ ମାଛ, ମାଂସ, ଖାଉଥିଲେ ଏହି ଜୀବସାରର ଅଭାବ ପ୍ରାୟ ହୁଏ ନାହିଁ । ଏକ ଲିଟର ଦୁଧରେ ମାତ୍ର ଏକ ମିଲିଗ୍ରାମ ନିଆସିନ୍ ଥିଲାବେଳେ ଏଥିରେ ଥିବା ଟ୍ରିପ୍ଟୋଫେନ୍‌ରୁ ୮ ମିଲିଗ୍ରାମ୍ ଅଧିକ ନିଆସିନ୍ ମିଳିଥାଏ ।

### ମଣିଷ ପାଇଁ ଆବଶ୍ୟକ ପରିମାଣ

ସୁସ୍ଥ ପୁରୁଷ ଲୋକ ଦିନକୁ ୧୬-୨୬ ମିଲିଗ୍ରାମ୍ ନିଆସିନ ଦରକାର କରେ । ଗର୍ଭବତୀ ମହିଳା, କ୍ଷୀର ଖୁଆଉଥିବା ନାରୀ ଆହୁରି ଅଧିକା ୫ ମିଲିଗ୍ରାମ ନିଆସିନ୍ ଦରକାର କରନ୍ତି ।

ପିଲମାନେ ୮-୨୧ ମିଲିଗ୍ରାମ ପର୍ଯ୍ୟନ୍ତ ଦିନକୁ ନିଆସିନ୍ ଦରକାର କରନ୍ତି । ଅଧିକ ନିଆସିନ୍ ଖାଇଲେ କିଛି ଖରାପ ପ୍ରଭାବ ଦେଖାଏନି । ଏହା ସହଜରେ ପରିସ୍ରା ବାଟେ ବାହାରିଯାଏ । କେଉଁ କେଉଁ ଖାଦ୍ୟରେ ଓ କେଉଁ କେଉଁ ପୁଷ୍ଟିସାରରୁ ଏହା ମିଳେ, ତଳିର ଏକ ତାଲିକା ।ତଳେ ଦିଆଗଲା ।

## ବିଭିନ୍ନ ଖାଦ୍ୟରେ ଥିବା ନିଆସିନ୍‌ର ପରିମାଣ

| କ୍ର:ସଂ: | ଖାଦ୍ୟର ନାମ | ଶହେଗ୍ରାମ ଖାଦ୍ୟରେ ନିଆସିନର ପରିମାଣ ମିଲିଗ୍ରାମ ମାପରେ |
|---|---|---|
| ୧ । | ଶୁଖିଲା ଇଷ୍ଟ | ୨୫-୩୫ |
| ୨ । | କଲିଜା | ୧୬-୨୦ |
| ୩ । | କୁଣ୍ଡା | ୧୬-୧୮ |
| ୪ । | ଚିନାବାଦାମ | ୧୪-୧୫ |
| ୫ । | ଚିନାବାଦାମ ଗୁଣ୍ଡ | ୧୯-୨୦ |
| ୬ । | ଗୋଟାସାରା ଶସ୍ୟ | ୩-୫ |
| ୭ । | ମାଂସ | ୬ ୭ |
| ୮ । | ମାଛ | ୩-୪ |
| ୯ । | ଦୁଧ | ·୨ |
| ୧୦ । | ଅଣ୍ଡା | ·୨ |

## କେତେକ ପୁଷ୍ଟିସାରରୁ ନିଆସିନ ପ୍ରସ୍ତୁତ

| କ୍ର:ସଂ: | ଖାଦ୍ୟ | ଖାଦ୍ୟରେ ନିଆସିନ୍‌ର ପରିମାଣ | ଟ୍ରିପ୍‌ଟୋଫେନ୍‌ରୁ ନିଆସିନ୍‌ର ପ୍ରସ୍ତୁତି |
|---|---|---|---|
| ୧ । | ଗାଈଦୁଧ | ୧-୨ ମି:ଗ୍ରା: | ୧୨.୪ ମି:ଗ୍ରା |

| | | |
|---|---|---|
| ୨ । ମଣିଷ ଦୁଧ | ୨·୫ | ୯·୭ |
| ୩ । ମାଂସ | ୨୪·୭ | ୧୪·୬ |
| ୪ । ଅଣ୍ଡା | ·୬ | ୧୯·୮ |
| ୫ । ଅଁଟା | ୨·୫ | ୭·୪ |
| ୬ । ମକା | ୫ | ୬·୭ |

## ଜୀବସାର—ଖ-୬ ବା ପିରଡ଼କ୍ସିନ୍

**ଆବିଷ୍କାର :—**

ଏହା ୧୯୩୮ ମସିହାରେ ଜର୍ମାନୀରେ କୁନ୍, ଲେଟକୋଭିସ୍କି ଆଦି ବୈଜ୍ଞାନିକଙ୍କ ଦ୍ୱାରା ବିଶୁଦ୍ଧ ଦାନାଦାର ପଦାର୍ଥ ଭାବରେ ଅଲଗା ହୋଇଥିଲା । ଏହା ପ୍ରଧାନତଃ ମଣିଷ ଶରୀରରେ ଆବଶ୍ୟକୀୟ ଏନ୍‌ଜାଇମ୍ ତିଆରିରେ ସାହାଯ୍ୟ କରେ ।

### ଏହାର ଅଭାବ ଜନିତ ରୋଗ

ଏହା ପୁଷ୍ଟିସାର, ସ୍ନେହସାର, ଶ୍ୱେତସାର ବିପାକରେ ସାହାଯ୍ୟ କରେ । ମସ୍ତିଷ୍କରେ ଏମିନୋ ଅମ୍ଳର ବିପାକରେ ପ୍ରଧାନ ଭୂମିକା ଗ୍ରହଣ କରେ । ଏହି ଜୀବସାରର ଅଭାବ ହେଲେ ଚର୍ମରେ ନାନାପ୍ରକାର ଘା ହୁଏ । କେତେକଙ୍କୁ ବାନ୍ତି ଲାଗେ । ମୁଣ୍ଡ ଘୂରାଏ, ଶରୀର ଦୁର୍ବଳ ଲାଗେ । ଜୀବସାର ଖ-୬ ଖାଇବାକୁ ଦେଲେ ଏହି ରୋଗ ସବୁ ଦୂର ହୋଇଯାଏ ।

## ମଣିଷ ପାଇଁ ଆବଶ୍ୟକ ପରମାଣ

ସୁସ୍ଥ ମଣିଷ ଦିନକୁ ୨ ମିଲିଗ୍ରାମ୍ ଜୀବସାର ଖ-୬ ଦରକାର କରେ । ଗର୍ଭବତୀ ମହିଳା ଓ ଦୁଧ ଖୁଆଉଥିବା ନାରୀ ଦିନକୁ ୨·୫ ମିଲିଗ୍ରାମ୍ ଦରକାର କରନ୍ତି । ପିଲମାନେ ୭ରୁ ୨ ମିଲିଗ୍ରାମ୍ ପର୍ଯ୍ୟନ୍ତ ଦରକାର କରିଥାନ୍ତି । ଏହା ଅଧିକ ପରିମାଣରେ ଶରୀର ଭିତରକୁ ଗଲେ କିଛି ଖରାପ ପ୍ରଭାବ ଦେଖାଏନି । ନିମ୍ନଲିଖିତ ଖାଦ୍ୟରୁ ଏହା ମିଳିଥାଏ ।

### ବିଭିନ୍ନ ଖାଦ୍ୟରେ ଥିବା ଜୀବସାର—ଖ-୬ର ପରମାଣ

| କ୍ର:ସ: | ଖାଦ୍ୟର ନାମ | ଶହେ ଗ୍ରାମ ଖାଦ୍ୟରେ ଜୀବସାର ଖ-୬ ର ମିଲିଗ୍ରାମ୍ ମାପରେ ପରିମାଣ |
|---|---|---|
| ୧ । | ଶୁଖିଲା ଇଷ୍ଟ | ·୬--·୪ |
| ୨ । | କୁଣ୍ଡା | ·୬-·୮ |
| ୩ । | କଲିଜା | ·୫-·୬ |
| ୪ । | ପୁରା ଶସ୍ୟ | ·୩--·୫ |
| ୫ । | ଡାଲିଜାତୀୟ ଖାଦ୍ୟ | ·୨--·୫ |
| ୬ । | ଚିନାବାଦାମ ଓ ତୈଳବୀଜ | ·୩--·୬ |
| ୭ । | ଦୁଧଗୁଣ୍ଡ | ·୪--·୭ |
| ୮ । | ଅଣ୍ଡା | ·୫--·୧ |
| ୯ । | ମାଂସ | ·୨--·୩ |
| ୧୦ । | ଶାକ୍‌ସବ୍‌ଜ | ·୨--·୩ |

# ପେଣ୍ଟୋଥେନିକ୍ ଅମ୍ଳ

## ଆବିଷ୍କାର :—

୧୯୩୮ ମସିହାରେ ଉଇଲିୟମସ୍ ଓ ତାଙ୍କ ସହକର୍ମୀମାନେ ଏହାକୁ ଅଲଗା କରିଥିଲେ । ଏହା ଆମ ଶରୀରରେ ନାନାପ୍ରକାର ଆବଶ୍ୟକୀୟ ଏନ୍‌ଜାଇମ ତିଆରିରେ ଦରକାର ହୁଏ ।

## ଏହାର ଅଭାବ ଜନିତ ରୋଗ

ଏହାର ଅଭାବ ହେଲେ ବାନ୍ତି ହୁଏ; ହାତ ଥରେ, ଲୋକ ଚିଡ଼ଚିଡ଼ିଆ ହୁଏ । ଗୋଡ଼ ତଳପା ଜ୍ୱାଳା ପୋଡ଼ା କରେ । ସ୍ନାୟୁ ଦୁର୍ବଳତା ଓ ମସ୍ତିଷ୍କ ବିକୃତି ମଧ୍ୟ ବେଳେ ବେଳେ ଦେଖାଦିଏ । ଅନ୍ୟ ଜୀବସାର-ଖ ଏହି ରୋଗସବୁକୁ ଦୂର କରିପାରେନି । କେବଳ ପେଣ୍ଟୋଥେନିକ ଅମ୍ଳ ଦୂର କରେ ।

## ମଣିଷ ପାଇଁ ଆବଶ୍ୟକ ପରିମାଣ

ସୁସ୍ଥ ମଣିଷ ଦିନକୁ ୧୦ ମିଲିଗ୍ରାମ ପେଣ୍ଟୋଥେନିକ ଅମ୍ଳ ଦରକାର କରେ । ଗର୍ଭବତୀମହିଳା ଓ କ୍ଷୀର ଦେଉଥିବା ନାରୀମାନେ ପନ୍ଦର ମିଲିଗ୍ରାମ ପର୍ଯ୍ୟନ୍ତ ଦରକାର କରନ୍ତି । ପିଲାମାନେ ୫-୧୦ ମିଲିଗ୍ରାମ ପର୍ଯ୍ୟନ୍ତ ଦରକାର କରନ୍ତି । ଏହି ଜୀବସାର ଅଧିକ ଖାଇଲେ କିଛି ଖରାପ ପ୍ରଭାବ ଦେଖାଏନି । ଅଧିକ ଜୀବସାର ଶରୀରରେ ବେଶି ଦିନ ରହି ନପାରି ପରିସ୍ରା ବାଟେ ବାହାରିଯାଏ । ପରପୃଷ୍ଠାରେ ଦିଆଯାଇଥିବା ଖାଦ୍ୟପଦାର୍ଥ ଏହାର ପ୍ରଧାନ ପ୍ରାପ୍ତିସ୍ଥଳ ।

## ପେଣ୍ଟୋଥେନିକ ଅମ୍ଳ କେଉଁ କେଉଁ ଖାଦ୍ୟରେ ଥାଏ ?

| କ୍ର:ସଂ: | ଖାଦ୍ୟର ନାମ | ଶହେଗ୍ରାମ ଖାଦ୍ୟରେ କେତେ ମିଲିଗ୍ରାମ ଥାଏ. |
|---|---|---|
| ୧ । | ଶୁଖିଲା ଇଷ୍ଟ | ୧୦-୧୧ |
| ୨ । | କଲିଜା | ୬-୮ |
| ୩ । | କୁଣ୍ଡା | ୩-୪ |
| ୪ । | ଗହମ ଗଜା | ୨-୩ |
| ୫ । | ପୁରା ଶସ୍ୟ | ·୭-·୧.୫ |
| ୬ । | ଚିନାବାଦାମ, ଡେଲିବୀଜ | ·୭-·୨୧ |
| ୭ । | ଅଣ୍ଡା | ୧·୫-୧·୭ |
| ୮ । | ଦୁଧ | ·୩-·୪ |
| ୯ । | ମାଂସ | ·୩-·୪ |
| ୧୦ । | ମାଛ | ·୪-·୭ |

## ଫୋଲିକ ଅମ୍ଳ

**ଆବିଷ୍କାର—**

ଏହା ଭିଟାମିନ-ଖ ପରିବାରର ଏକ ସଦସ୍ୟ । ଏହା ୧୯୩୨ ମସିହା ଠାରୁ ବିଭିନ୍ନ ନାମରେ ବୈଜ୍ଞାନିକମାନଙ୍କ ଠାରେ ଜଣାଅଛି । ୧୯୩୪ ମସିହାରେ ଉଇଲସ ପ୍ରମାଣ କରିଥିଲେ ଯେ ଗ୍ରୀଷ୍ମମଣ୍ଡଳୀୟ ଏକ ପ୍ରକାର ରକ୍ତହୀନତା

ରୋଗରେ ଏହାକୁ ଦେଲେ ରୋଗ ଦୂର ହୁଏ । ଏହି ଜୀବସାର ଇଷ୍ଟରେ ଅଛି ବୋଲି ସେ ଦର୍ଶାଇଥିଲେ । ଏହାକୁ ସେତେବେଳେ ଭିଟାମିନ—ଏମ କୁହା ଯାଉଥିଲା । ପରେ ବହୁ ବୈଜ୍ଞାନିକ ଏହାକୁ ବିଶୁଦ୍ଧ ଭାବରେ ଅଲଗା କରି ଏହାର ନାମ ଫୋଲିକ ଅମ୍ଳ ଦେଲେ । ଏହାର ଏହି ନାମ ପାଇଁ ବୈଜ୍ଞାନିକ ମିଚେଲ୍, ସ୍ନେଲ ଓ ଉଇଲିୟମସ୍ ଦାୟୀ । ଏଥି ପୂର୍ବରୁ ଏହାର ନାମ ଭିଟାମିନ—ଏମ୍ ବ୍ୟତୀତ ଭିଟାମିନ—ବି ସି, ଫେକ୍ଟର—ଇଉ, ଉଇଲସ ଫେକ୍ଟର ଆଦି କେତେ କ'ଣ ଥିଲା । ଏହି ଜୀବସାର କୋଷଠାରେ ଡ଼. ଏନ୍. ଏ ସଂଶ୍ଳେଷଣରେ ଭାଗ ନିଏ ।

## ଏହାର ଅଭାବ ଜନିତ ରୋଗ

ଏହାର ଅଭାବ ହେଲେ ଏକପ୍ରକାର ରକ୍ତହୀନତା ରୋଗ ଦେଖାଦିଏ । ଏହି ରୋଗ ଗରିବ ଲୋକଙ୍କ ଠାରେ ଅଧିକ ଦେଖାଯାଏ । ଯେଉଁମାନେ ମାଛ, ମାଂସ, କଲିଜା, ଦୁଧ ଆଦି ନ ଖାଆନ୍ତି, ସେମାନଙ୍କୁ ଏ ରୋଗ ଧରେ । ଫୋଲିକ ଅମ୍ଳ ଖାଇଲେ ଏ ରୋଗ ଦୂର ହୁଏ । ଶୁଖିଲା ଇଷ୍ଟ, କଲିଜା, କୁଣ୍ଡା, ଗହମ ଗଜା ହେଉଛି ଏହାର ପ୍ରଧାନ ଉତ୍ସ ।

## ଆମ ଶରୀର ପାଇଁ କେତେ ଦରକାର ?

ଆମ ଶରୀର ପାଇଁ ଦିନକୁ ୧୦୦-୫୦୦ ମାଇକ୍ରୋଗ୍ରାମ ପର୍ଯ୍ୟନ୍ତ ଦରକାର ହୁଏ । ବେଶି ଖାଇଲେ ମୂତ୍ରନଳୀରେ କ୍ଷୟକ୍ଷତି ହେବାର ଦେଖାଯାଏ । ପରପୃଷ୍ଠାରେ ଦିଆଯାଇଥିବା ଖାଦ୍ୟ ପଦାର୍ଥରେ ଏହା ଅଧିକ ପରିମାଣରେ ଥାଏ ।

# ଫୋଲିକ ଅମ୍ଳ କେଉଁ କେଉଁ ଖାଦ୍ୟରେ କେତେ ଥାଏ

| କ୍ର:ସଂ: ଖାଦ୍ୟର ନାମ | ପ୍ରତି ୧୦୦ ଗ୍ରାମ ଖାଦ୍ୟରେ କେତେ ମାଇକ୍ରୋଗ୍ରାମ୍ ଥାଏ |
|---|---|
| ୧ । ବାଜରା | ୧୪.୬ |
| ୨ । ମକା | ୧୪ |
| ୩ । ଯଅ | ୧୪ |
| ୪ । ଉଷୁନା ଚାଉଳ | ୮.୯ |
| ୫ । ଅରୁଆ ଚାଉଳ | ୪.୧ |
| ୬ । ଗହମ | ୧୪.୨ |
| ୭ । ଗହମ ଅଟା | ୧୨.୧ |
| ୮ । ବୁଟ | ୩୪. |
| ୯ । ହରଡ | ୨୪ |
| ୧୦ । ମଟର | ୪.୬ |
| ୧୧ । ମସୁର | ୧୪.୫ |
| ୧୨ । ସୋୟାବିନ୍ | ୮.୬ |
| ୧୩ । ବନ୍ଧାକୋବି | ୪୧ |
| ୧୪ । ପୋଇଶାଗ | ୫୧ |
| ୧୫ । ଗାଜର | ୫ |
| ୧୬ । ପିଆଜ | ୧.୫ |
| ୧୭ । ଆଳୁ | ୩ |
| ୧୮ । ବାଇଗଣ | ୫ |
| ୧୯ । କାକୁଡ଼ି | ୧୨ |
| ୨୦ । ଭେଣ୍ଡି | ୨୫.୩ |

# ବାୟୋଟିନ୍

**ଆବିଷ୍କାର :—**

ଏହା ଜୀବସାର-ଖ ମଣ୍ଡଳର ଏକ ସଦସ୍ୟ । ୧୯୨୭ ମସିହାରେ ବୈଜ୍ଞାନିକ ବୋଆସ ଲକ୍ଷ୍ୟକଲେ ଯେ ଯେତେବେଳେ ମୂଷାକୁ କଞ୍ଚା ଅଣ୍ଡାର ଧଳା ଅଂଶ ପୁଷ୍ଟିସାର ଭାବରେ ଖାଇବାକୁ ଦିଆଯାଉଛି, ସେତେବେଳେ ମୂଷା ଦେହରେ ଚର୍ମରୋଗ ହେଉଛି, ବାଳ ଉପୁଡ଼ି ଯାଉଛି, ମାଂସପେଶୀ ଦୁର୍ବଳ ହୋଇ ପଡ଼ୁଛି । ଏହି ରୋଗ ଦୂର ହୋଇଯାଉଛି, ଯେତେବେଳେ ଇଷ୍ଟ, କଲଜା, ବା ଅଣ୍ଡାର ହଳଦିଆ ଅଂଶ ଖାଇବାକୁ ଦିଆ-ଯାଉଛି । ଏଥିରୁ ବୈଜ୍ଞାନିକ ଗିଯୁର୍ଗି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଅଣ୍ଡାର ହଳଦିଆ ଅଂଶରେ ଏମିତି ଏକ ଖାଦ୍ୟ

ସହାୟକ ଅଛି ଯାହା ମୂଷା ପାଇଁ ଭିଟାମିନ ଭଳି କାର୍ଯ୍ୟ କରୁଛି । ସେ ଏହାର ନାମ ଭିଟାମିନ ଏଇଚ ଦେଲେ । ଗିୟୁର୍ଗି, କୁନ୍ ଆଦି ବୈଜ୍ଞାନିକମାନେ ଭିଟାମିନ ଏଇଚକୁ ଅଲଗା କଲେ ଓ ଦେଖିଲେ ଏହା ବାୟୋଟିନ ଛଡ଼ା ଅନ୍ୟ କିଛି ନୁହେଁ । ଅଣ୍ଡାର ଧଳା ଅଂଶରେ ଏଭିଡ଼ିନ ନାମକ ଏକ ପଦାର୍ଥ ଅଛି, ଯାହା ମୂଷାର ଉପରୋକ୍ତ ରୋଗ ପାଇଁ ଦାୟୀ ।

## ଏହାର ଅଭାବ ଜନିତ ରୋଗ

ଏହି ଜୀବସାରର ଅଭାବ ହେଲେ ନାନା ପ୍ରକାର ଚର୍ମରୋଗ ହୁଏ । ଏହି ଚର୍ମରୋଗ ଅଧିକ ହାତ, ଗୋଡ଼, ବେକ ଆଦିରେ ଦେଖାଯାଏ । ଏହାର ଅଭାବରୁ ରକ୍ତହୀନତା ମଧ୍ୟ ଦେଖାଦିଏ । ବାୟୋଟିନ ଦେଲେ ଏହି ସବୁ ରୋଗ ଦୂର ହୋଇଯାଏ ।

## ଆମର ଦୈନିକ ଆବଶ୍ୟକତା

ଆମର ଦିନକୁ ୫୦—୬୦ ମାଇକ୍ରୋଗ୍ରାମ୍ ବାୟୋଟିନ ଦରକାର । ପିଲମାନଙ୍କର ୨୦—୪୦ ମାଇକ୍ରୋଗ୍ରାମ୍ ଦରକାର । ଏହା ପ୍ରଧାନତଃ ଶୁଖିଲା ଇଷ୍ଟ, କୁଣ୍ଡା, କଲିଜା ଗହମଗଜା ଆଦିରେ ଥାଏ । ଏହି ଜୀବସାର ଥିବା ଖାଦ୍ୟପଦାର୍ଥର ଏକ ତାଲିକା ତଳେ ଦିଆଗଲା ।

## ବାୟୋଟିନ ଥିବା ଖାଦ୍ୟର ଏକ ତାଲିକା

| କ୍ର.ସଂ | ଖାଦ୍ୟର ନାମ | ପ୍ରତି ଶହେଗ୍ରାମ୍‌ରେ କେତେ ମାଇକ୍ରୋଗ୍ରାମ୍ ଅଛି |
|---|---|---|
| ୧ । | ଶୁଖିଲା ଇଷ୍ଟ | ୧୦୦-୨୦୦ |

## କୋଲନ୍

### ଆବିଷ୍କାର :—

ଏହା ଜୀବସାର-ଖ ମଣ୍ଡଳର ଏକ ସଦସ୍ୟ । ଏହାର ଆବିଷ୍କାରକ ହେଉଛନ୍ତି ବେଷ୍ଟ ଓ ହାଣ୍ଟସ୍‌ମେନ । ଏହି ଜୀବସାର ଯକୃତରେ ଚର୍ବି ବସିବାରେ ବାଧାଦିଏ । ଏହା ପ୍ରାଣୀର ଶରୀର ବୃଦ୍ଧିରେ ସାହାଯ୍ୟ କରେ । ଏହାର ଅଭାବ ହେଲେ ଶରୀର ବୃଦ୍ଧି ବାଧାପାଏ । ବୃକ୍କର କାର୍ଯ୍ୟଦକ୍ଷତା ହ୍ରାସ ପାଏ ।

### ଏହାର ଆଧିକ୍ୟ ହେଲେ କ'ଣ ହୁଏ ?

ଆମ ଶରୀର ପାଇଁ ଦୈନିକ କେତେ ପରିମାଣର କୋଲନ ଦରକାର ତାହା ସ୍ପଷ୍ଟଭାବେ ଜଣା ନାହିଁ । ହେଲେ ସାଧାରଣ

ଖାଦ୍ୟରେ ଏହା ଯଥେଷ୍ଟ ପରିମାଣରେ ଥିବାରୁ ଏହାର ଅଭାବ-ଜନିତ ରୋଗ ପ୍ରାୟ ଦେଖାଯାଏନି । ଏହା ନିମ୍ନଲିଖିତ ଖାଦ୍ୟ-ପଦାର୍ଥରେ ଅଧିକ ପରିମାଣରେ ଥାଏ ।

## କୋଲିନ ଥିବା ଖାଦ୍ୟ ପଦାର୍ଥ

| କ୍ର.ସଂ | ଖାଦ୍ୟର ନାମ | ୧୦୦ ଗ୍ରାମରେ କେତେ ମିଲିଗ୍ରାମ ଅଛି |
|---|---|---|
| ୧ । | ଅଣ୍ଡାର ଧଳା ଅଂଶ | ୫୦୪ |
| ୨ । | ଅଣ୍ଡାର ହଳଦିଆ ଅଂଶ | ୧୪୯୦ |
| ୩ । | କଲିଜା | ୫୫୦-୬୨୦ |
| ୪ । | ଗହମ ଗଜା | ୪୦୬-୪୫୦ |
| ୫ । | ମାଂସ | ୮୪-୯୬ |
| ୬ । | ଲୁଣ୍ଡା | ୧୫୦-୧୮୦ |
| ୭ । | ଚିନାବାଦାମ | ୯୫-୧୬୫ |
| ୮ । | ଗୋଟା ଶସ୍ୟ | ୧୧୦-୧୪୬ |
| ୯ । | ଦୁଧ | ୧୫-୧୮ |
| ୧୦ । | ଫଳ ଓ ପନିପରିବା | ୨୦-୩୦ |

## ପାରାଏମିନୋ ବେନଜଇକ ଅମ୍ଳ

**ଆବିଷ୍କାର :—**

ଏହା ଜୀବସାର-ଖ ମଣ୍ଡଳର ଏକ ସଦସ୍ୟ । ମଣିଷ ଓ ପ୍ରାଣୀମାନଙ୍କ ଶରୀରର ସମ୍ୟକ୍ ଅଭିବୃଦ୍ଧି ପାଇଁ ଏହା ଆବଶ୍ୟକ ବୋଲି ୧୯୪୧ ମସିହାରେ ଆନସବେଚର ସୂଚାଇ ଥିଲେ । ଏହା ଖାଦ୍ୟରେ ଥିଲେ ପ୍ରାଣୀମାନଙ୍କର ଦୁଗ୍ଧ ଉତ୍ପାଦନ ଭଲ ହୁଏ ।

ଏହାର ଅଭାବରେ ଶରୀରର ସମ୍ୟକ୍ ଅଭିବୃଦ୍ଧି ଘଟେନ। ପ୍ରାଣୀମାନଙ୍କର ଦୁଗ୍ଧ ଉତ୍ପାଦନ କ୍ଷମତା କମିଯାଏ।

ଆମ ଶରୀର ପାଇଁ ଏହି ଜୀବସାର ଦୈନିକ କେତେ ଦରକାର ହୁଏ, ତାହା ଠିକ୍ ଭାବରେ ଜଣା ପଡ଼ ନାହିଁ। ଏହା ନିମ୍ନଲିଖିତ ଖାଦ୍ୟପଦାର୍ଥରେ ଥାଏ।

**ପାରାଏମିନୋବେନ୍ଜାଇକ୍ ଅମ୍ଳ ଥିବା ଖାଦ୍ୟପଦାର୍ଥ**

| କ୍ର. ସଂ | ଖାଦ୍ୟର ନାମ | ପ୍ରତି ଶହେଗ୍ରାମରେ କେତେ ମାଇକ୍ରୋଗ୍ରାମ ଥାଏ |
|---|---|---|
| ୧। | ଗହମ ଗଜା | ୫୦-୧୦୦ |
| ୨। | ଗୋଟା ଗହମ | ୨୫ |
| ୩। | ଚିନାବାଦାମ | ୫୦-୮୦ |
| ୪। | ଶୁଖିଲା ଇଷ୍ଟ | ୫୦୦-୯୦୦ |
| ୫। | କଲିଜା | ୨୦-୩୦ |
| ୬। | ମାଂସ | ୩୦ |
| ୭। | ବନ୍ଧାକୋବି | ୩୩ |
| ୮। | ଗାଜର | ୮ |
| ୯। | ଆଳୁ | .୩୪ |
| ୧୦। | କଦଳୀ | ୯-୧୨ |

# ଆଇନୋସିଟଲ

**ଅବିଷ୍କାର :—**

ଏହା ଜୀବସାର-ଖ ମଣ୍ଡଳର ଏକ ସଦସ୍ୟ । ୧୯୪୦ ମସିହାରେ ବୈଜ୍ଞାନିକ ଉଲେ ପ୍ରମାଣ କଲେ ଖାଦ୍ୟରେ ଏହା ନଥାଇ ମୂଷାକୁ ଖାଇବାକୁ ଦେଲେ ମୂଷାର ସମ୍ୟକ୍ ଅଭିବୃଦ୍ଧି ହୁଏନ । ଶରୀରର ଲୋମ ଝଡ଼ିପଡ଼େ । ଆଖିପତାର ବାଳ ଝଡ଼ିପଡ଼େ । ଏହା ଅଭାବରୁ ଯକୃତରେ ଚର୍ବି ବସିଯାଏ । ଶରୀରର ରୋଗ ପ୍ରତିରୋଧ କ୍ଷମତା ଓ ସମ୍ୟକ୍ ଅଭିବୃଦ୍ଧି ବାଧାପାଏ । ଏହା ଆମ ଶରୀର ପାଇଁ ଦିନକୁ କେତେ ଦରକାର ଠିକ୍ ଭାବରେ ଜଣା ଯାଇ ନାହିଁ । ସାଧାରଣ ଖାଦ୍ୟ ଖାଇଲେ ଏହାର ଅଭାବ ପ୍ରାପ୍ତ ଘଟେନି । ନିମ୍ନଲିଖିତ ଖାଦ୍ୟପଦାର୍ଥରେ ଏହା ଅଧିକ ପରିମାଣରେ ଥାଏ ।

### ଆଇନୋସିଟଲ ଥିବା ଖାଦ୍ୟପଦାର୍ଥ

| କ୍ର·ସଂ | ଖାଦ୍ୟର ନାମ | ୧୦୦ଗ୍ରାମ ଖାଦ୍ୟରେ କେତେ ମିଲିଗ୍ରାମ ଥାଏ |
|---|---|---|
| ୧ । | ପନିପରିବା | ୨୭-୧୭୦ |
| ୨ । | ଫଳ | ୨୨-୨୧୦ |
| ୩ । | କଲିଜା | ୨୦୦-୪୦୦ |
| ୪ । | ଦୁଧ | ୫୦ |
| ୫ । | ପୁରାଣସ୍ୟ | ୧୨୨-୧୮୦ |
| ୬ । | ମାଛ | ୧୭-୪୪ |
| ୭ । | ଚିନାବାଦାମ ଓ ତୈଳବୀଜ | ୧୭୦-୨୭୦ |
| ୮ । | ଶୁଖିଲା ଇଷ୍ଟ | ୫୦-୨୭୦ |

# ଜୀବସାର ଖ-୧୨

**ଆବିଷ୍କାର :—**

ଏହା ଜୀବସାର-ଖ ମଣ୍ଡଳର ଏକ ପ୍ରଧାନ ସଦସ୍ୟ । ଏହାର ଅଭାବରେ ମାରାତ୍ମକ ରକ୍ତହୀନତା ରୋଗ ଦେଖାଦିଏ । ଇଂଲଣ୍ଡର ସ୍ମିଥ୍ ଓ ଆମେରିକାର ଦୁଇଜଣ ବୈଜ୍ଞାନିକ ପାର୍କର ଓ ରିକ୍ସଙ୍କ ଅଧିନାୟକତ୍ୱରେ ୧୯୪୮ ମସିହାରେ ଏହା ଅଲଗା କରା ହୋଇଥିଲା । ଏହାର ରାସାୟନିକ ନାମ ହେଉଛି ସିଆନୋକୋବାଲମିନ । ଏହା ଶରୀରର କେତେକ କୋଷର ସମ୍ୟକ୍ ଅଭିବୃଦ୍ଧିରେ ସାହାଯ୍ୟ କରେ । ଏହା ଦେହରେ ଥିଲେ ଡି. ଏନ. ଏ ସଂଶ୍ଳେଷଣରେ ଭାଗନିଏ । ଶ୍ୱେତସାର, ସ୍ନେହସାର, ପୁଷ୍ଟିସାରର କେତେକ ଅଜଣା ପ୍ରକ୍ରିୟାରେ ଏହା ସାହାଯ୍ୟ କରେ । ଅସ୍ଥି ମଜ୍ଜାକୁ ସୁସ୍ଥ ରଖେ ଓ ରକ୍ତକୋଷ ତିଆରିରେ ସାହାଯ୍ୟ କରେ । ଏହାର ଅଭାବରେ କ୍ଷୁଧା କମିଯାଏ । ଖାଇବାକୁ ଇଚ୍ଛା ହୁଏନି । ଏହାର ଅଭାବ ହେଲେ ସ୍ନାୟୁ ଦୁର୍ବଳତା ମଧ୍ୟ ବଢ଼ିଯାଏ । ବହୁଦିନ ପର୍ଯ୍ୟନ୍ତ ମାରାତ୍ମକ ରକ୍ତହୀନତାର କାରଣ ଜଣାପଡ଼ି ନଥିଲା । ତେଣୁ ଆଗରୁ ଏଥିରେ ବହୁ ରୋଗୀ ମରି ଯାଉଥିଲେ । ଯେଉଁଦିନ ଠାରୁ ଜୀବସାର ଖ-୧୨ ଆବିଷ୍କୃତ ହେଲା, ମାରାତ୍ମକ ରକ୍ତହୀନତାରୁ ଆଉ ରୋଗୀ ପ୍ରାୟ ମରୁନାହାନ୍ତି । ଏହି ରକ୍ତହୀନତା ହେଲେ ରକ୍ତରେ ଲୋହିତ ରକ୍ତକଣିକାର ସଂଖ୍ୟା ବେଶ କମିଯାଏ । ଅସ୍ଥି ମଜ୍ଜା ଦୁର୍ବଳ ତଥା କାର୍ଯ୍ୟକ୍ଷମହୀନ ହୋଇପଡ଼େ । ଏହାର ଅଭାବରେ ପାକସ୍ଥଳୀରେ ଆଶାଜନକ ପାର୍କରସ ନିଃସୃତ ହୁଏନି ! ପାଟି ଓ ଜିଭରେ ଘା ଓ ପ୍ରଦାହ ହୁଏ । ଶରୀରର ସ୍ନାୟୁତନ୍ତ୍ରରେ ନାନା ଅସୁବିଧା ଦେଖାଦିଏ । ସୁଷୁମ୍ନା

କାଣ୍ଡ ଦୁର୍ବଳ ଓ କାର୍ଯ୍ୟକ୍ଷମହୀନ ହୋଇପଡ଼େ । ଏହାର ଅଭାବରେ ମଣିଷର ଉତ୍ପାଦିକା ଶକ୍ତି କମିଯାଏ । ଏପରିକି ଲୋକେ ସନ୍ତାନ ସନ୍ତତି ଜନନ ଶକ୍ତି ହରାଇବସନ୍ତି ।

ଯେଉଁମାନେ ପୁରାପୁରି ନିରାମିଷାଶୀ ସେମାନେ ଏହାର ଅଭାବରୁ ବେଶି କଷ୍ଟ ଭୋଗନ୍ତି । ଏହା ପ୍ରଧାନତଃ ପ୍ରାଣୀଜ ଖାଦ୍ୟପଦାର୍ଥରେ ଥାଏ । ସାଧାରଣ ସୁସ୍ଥ ପୁରୁଷ ଦୈନିକ ୨-୫ ମାଇକ୍ରୋଗ୍ରାମ ଦରକାର କରେ । ଗର୍ଭବତୀ ମହିଳା ଓ ଦୁଗ୍ଧବତୀ ସ୍ତ୍ରୀମାନେ ୫-୮ ମାଇକ୍ରୋଗ୍ରାମ୍ ଦରକାର କରିଥାନ୍ତି । ଶିଶୁ ଓ ପିଲମାନେ ଦୈନିକ ୧—୨ ମାଇକ୍ରୋଗ୍ରାମ ଦରକାର କରିଥାନ୍ତି । ଏହାର ପ୍ରଧାନ ପ୍ରାପ୍ତିସ୍ଥଳ ହେଉଛି କଲିଜା, ମାଂସ, ମାଛ ଇତ୍ୟାଦି । ଏହା ପ୍ରଧାନତଃ ନିମ୍ନଲିଖିତ ଖାଦ୍ୟପଦାର୍ଥରେ ଥାଏ ।

## ଜୀବସାର ଖ-୧୨ ଥିବା ଖାଦ୍ୟପଦାର୍ଥ

| କ୍ର.ସଂ | ଖାଦ୍ୟର ନାମ | ପ୍ରତି ଶହେ ଗ୍ରାମରେ କେତେ ମାଇକ୍ରୋଗ୍ରାମ୍ ଥାଏ |
|---|---|---|
| ୧ । | ଛେଳି ଓ ଅନ୍ୟାନ୍ୟ ପ୍ରାଣୀଙ୍କ କଲିଜା | ୧୨୦-୧୩୩ |
| ୨ । | ମାଂସ | ୧୧-୩୦ |
| ୩ । | ମାଛ | ୨୩ |
| ୪ । | ଅଣ୍ଡା | ୧୧ |
| ୫ । | ଗୁଣ୍ଡ ଦୁଧ | ୨.୪ |
| ୬ । | ଗାଈ ଦୁଧ | .୫ |
| ୭ । | ମଇଁଷି ଦୁଧ | .୪ |
| ୮ । | ମଣିଷ ଦୁଧ | ୦୨ |



## ଚତୁର୍ଥ ଅଧ୍ୟାୟ

## ଜୀବସାର-ଗ

### ଆବିଷ୍କାର :—

ଜୀବସାର-ଗକୁ ଖାଦ୍ୟପଦାର୍ଥରୁ ବିଶୁଦ୍ଧ ଭାବରେ ଅଲଗା କରିବାରେ ସର୍ବପ୍ରଥମ କୃତକାର୍ଯ୍ୟ ହୋଇଥିଲେ ବୈଜ୍ଞାନିକ ଜିଲଭା ୧୯୧୭ରୁ ୧୯୨୭ ମସିହା ଭିତରେ । ୧୯୨୮ରେ ସେଣ୍ଟ୍ ଗିଅର୍ଗି ବନ୍ଧାକୋବି, ଆଡ୍ରିନାଲଗ୍ରନ୍ଥି ଓ କମଳାଲେମ୍ବୁରୁ ଏହାକୁ ଅଲଗା କରିପାରିଥିଲେ । ସେ ଏହି ଜୀବସାରର ଅମ୍ଳ ପ୍ରକୃତି ଥିବା ସର୍ବପ୍ରଥମ ଲକ୍ଷ୍ୟ କରିଥିଲେ । ୧୯୩୨ମସିହାରେ ଓ୍ୱାଗ୍ ଓ କିଙ୍ଗ କାଗେଜିଲେମ୍ବୁ ରସରୁ ବିଶୁଦ୍ଧ ଜୀବସାର-ଗ ଅଲଗା କରିପାରିଥିଲେ । ଏହାପରେ ଜୀବସାର-ଗ ର ନାମ ଦିଆଗଲା ଏସକରବିକ ଅମ୍ଳାକାରଣ । ଏହା ସ୍କର୍ଭି ରୋଗ ବିରୁଦ୍ଧରେ ବ୍ୟବହୃତ ହୁଏ । ଜୀବସାର-ଗ କ୍ଷୁଦ୍ରାନ୍ତ୍ରରୁ ଖୁବ୍ ଭଲଭାବରେ ଶରୀର ଭିତରକୁ ବିଶୋଷିତ ହୁଏ । ଏହି ଜୀବସାର ଆମ ଦେହରେ ବେଶିଦିନ ସଞ୍ଚିତ ହୋଇ ରହିପାରେନ । ଏହା ସହଜରେ ପରିସ୍ରାରେ ଆମ ଶରୀର ଭିତରୁ ବାହାରିଯାଏ ।

### ଏହାର କାର୍ଯ୍ୟ

ଆମ ଶରୀରର ବିପାକୀୟ କାର୍ଯ୍ୟରେ ଏହା ସାହାଯ୍ୟ କରେ । ଶରୀରର କ୍ଷତସ୍ଥାନକୁ ଶୀଘ୍ର ଭଲ କରିବାରେ ସାହାଯ୍ୟ କରେ । ଏହା ରୋଗ ସୃଷ୍ଟି ଓ ଜୀବାଣୁ ସଂକ୍ରମଣରୁ ଆମକୁ ରକ୍ଷାକରେ । ଶରୀରରୁ ରକ୍ତସ୍ରାବକୁ ବାଧା ଦିଏ ।

### ଏହାର ଅଭାବ ଜନିତ ରୋଗ

ଏହି ଜୀବସାର ଅଭାବରୁ ମଣିଷଙ୍କୁ ସ୍କର୍ଭି ନାମକ ଏକ-ପ୍ରକାର ରୋଗ ହୁଏ । ଏହି ରୋଗରେ ଦେହରେ ଦୁର୍ବଳତା

ଦେଖାଦିଏ । ଦାନ୍ତ ମାଢ଼ିରୁ ରକ୍ତ ନିର୍ଗତ ହୁଏ । ହାଡ଼ସନ୍ଧି ସବୁ ଫୁଲିଯାଇ ବଢ଼େ । ଶରୀରର ବିଭିନ୍ନ ଟିସୁରୁ ରକ୍ତକ୍ଷୟ ଦେଖାଦିଏ । ଏହି ରୋଗ ହେଲେ ମଣିଷ ଅଳ୍ପ କାମ କରି ଥକିଯାଏ । ନିଜକୁ ଅସ୍ଥିର ଲାଗେ । ହାଡ଼ରେ ଦରଜ ଲାଗେ, ଗଣ୍ଠିରେ ବ୍ୟଥା ଅନୁଭବ ହୁଏ । ମାଂସପେଶୀରେ ଦରଜ ଓ ବ୍ୟଥା ଜଣାପଡ଼େ । ଗଣ୍ଠି ସନ୍ଧି ଫୁଲିଯାଇ ବଢ଼େ ଓ ସେଥିରୁ ରକ୍ତସ୍ରାବ ହୁଏ । କେତେକ ମାଂସପେଶୀ ବିଶେଷତଃ ତଳ ଗୋଡ଼, ଜଙ୍ଘ, ହାତରେ ଥିବା ମାଂସପେଶୀରୁ ରକ୍ତସ୍ରାବ ଘଟେ । ଦାନ୍ତମାଢ଼ିରୁ ରକ୍ତସ୍ରାବ ହେବା ଫଳରେ ଦାନ୍ତ ପଡ଼ିଯାଏ । ଦାନ୍ତମୂଳ ଫୁଲିଯାଇ କଷ୍ଟ ଦିଏ ।

ପିଲାମାନଙ୍କର ସ୍କର୍ଭି ରୋଗ ହେଲେ ସେମାନଙ୍କ ହାତ ଗୋଡ଼ରେ ବ୍ୟଥା ହୁଏ । ହାତ ଗୋଡ଼ରେ କିଛି ବାଜିଗଲେ ଭାରି କଷ୍ଟ ହୁଏ । ପିଲାମାନେ ଚିହିଡ଼ା ଛୁଡ଼ି କାନ୍ଦି ଉଠନ୍ତି । ଦାନ୍ତ ଯଦି ଉଠିଥାଏ ତେବେ ଦାନ୍ତମୂଳ ଫୁଲିଯାଏ । ଦାନ୍ତମୂଳରେ ଘା ହୁଏ ।

ଏହି ଜୀବସାରର ଅଭାବ ହେଲେ ଶରୀରର କୌଣସି ଘା ଶୀଘ୍ର ଶୁଖେନି । କାରଣ କୋଲାଜେନ ତିଆରିରେ ବାଧା ଉପୁଜେ ଓ ଟିସୁ ତିଆରିରେ ବ୍ୟାଘାତ ଜନ୍ମେ । କେତେକ ବୈଜ୍ଞାନିକ ମତଦିଅନ୍ତି, ଜୀବସାର-ଗ ସର୍ଦ୍ଦିରୋଗରୁ ରକ୍ଷାକରେ । ନୋବେଲ ପୁରସ୍କାର ବିଜେତା ଲାଇନସ ପାଉଲିଙ୍ଗ ଏହି ମତର ସ୍ରଷ୍ଟା । ସର୍ଦ୍ଦି ଆରମ୍ଭ ହେବାକ୍ଷଣି ଅଧିକ ପରିମାଣରେ ଏହି ଜୀବସାର ଖାଇଲେ ରୋଗର ପ୍ରକୋପ ବଢ଼େନି । କିନ୍ତୁ ଅନ୍ୟ ବହୁ ବୈଜ୍ଞାନିକ ଏହାକୁ ସ୍ୱୀକାର କରନ୍ତିନି ।

# ଆମର ଦୈନନ୍ଦିନ ଆବଶ୍ୟକତା

ସୁସ୍ଥ ପୁରୁଷ ଲୋକର ଦିନକୁ ହାରାହାରି ୫୦ ମିଲିଗ୍ରାମ୍ ଜୀବସାର୍-ଗ ଦରକାର । ଗର୍ଭବତୀ ମହିଳା ଓ ଦୁଗ୍ଧବତୀ ମହିଳାମାନେ ୫୦-୮୦ ମିଲିଗ୍ରାମ୍ ପର୍ଯ୍ୟନ୍ତ ଏହି ଜୀବସାର ଦରକାର କରିଥାନ୍ତି । ପିଲାମାନେ ୩୦-୫୦ ମିଲିଗ୍ରାମ୍ ପର୍ଯ୍ୟନ୍ତ ଏହି ଜୀବସାର ଆବଶ୍ୟକ କରନ୍ତି ।

ଏହି ଜୀବସାର ଅମ୍ଳଜାତୀୟ । ତେଣୁ ଅମ୍ଳୀୟ ମାଧ୍ୟମରେ ଏହା ଅଧିକଦିନ ରହିପାରେ । କ୍ଷାର ସଂସ୍ପର୍ଶରେ ଆସିଲେ ଏହା ସହଜରେ ନଷ୍ଟ ହୋଇଯାଏ । ଖୋଲା ପାତ୍ରରେ ଖାଦ୍ୟପଦାର୍ଥକୁ ଅତ୍ୟଧିକ ସିଝା କଲେ ଏହା ନଷ୍ଟ ହୋଇଯାଏ । କାରଣ ଏହା ଅମ୍ଳଜାନ ଉପସ୍ଥିତିରେ ଶୀଘ୍ର ଜାରିତ ହୋଇଯାଏ । ପିତ୍ତଳ ବା ତମ୍ବା ପାତ୍ରରେ ରାନ୍ଧିଲେ ଖାଦ୍ୟରୁ ଏହି ଜୀବସାର ନଷ୍ଟ ହୋଇଯାଏ । ଏହା ଜଳରେ ଖୁବ୍ ଦ୍ରବଣୀୟ । ଏହା ଏକ ବିଜାରକ ଭାବରେ କାର୍ଯ୍ୟ କରେ । ପରିପରିବା, ଫଳମୂଳ ଅଧିକଦିନ ରହିଗଲେ ଏଥିରୁ ଜୀବସାର୍-ଗ ଧୀରେ ଧୀରେ ନଷ୍ଟ ହୋଇଯାଏ । ନିମ୍ନଲିଖିତ ଖାଦ୍ୟପଦାର୍ଥରେ ଜୀବସାର୍ ଗ ଥାଏ ।

## ଜୀବସାର-ଗ ଥିବା ବିଭିନ୍ନ ଖାଦ୍ୟପଦାର୍ଥ

| କ୍ର:ସଂ: | ଖାଦ୍ୟର ନାମ | ଶହେ ଗ୍ରାମରେ କେତେ ମିଲିଗ୍ରାମ ଥାଏ |
|---|---|---|
| ୧ । | ଅଁଳା | ୬୦୦ |
| ୨ । | ପିଜୁଳି | ୩୦୦ |

| | | |
|---|---|---|
| ୩ । | କାଗିଜି ଲେମ୍ବୁ | ୬୩ |
| ୪ । | କମଳା ଲେମ୍ବୁ | ୬୮ |
| ୫ । | ସପୁରି ପଣସ | ୬୩ |
| ୬ । | ପାଚିଲା ଆମ୍ବ | ୨୪ |
| ୭ । | ପାଚିଲା ପପେୟା | ୪୬ |
| ୮ । | ପାଚିଲା ବିଲାତି ବାଇଗଣ | ୩୨ |
| ୯ । | ଲଙ୍କାବାଦାମ ଫଳ | ୬୦ |
| ୧୦ । | କଞ୍ଚାଲଙ୍କା | ୩୫ |
| ୧୧ । | ବନ୍ଧାକୋବି | ୧୨୪ |
| ୧୨ । | ସଜନାଶାଗ | ୨୨୦ |
| ୧୩ । | ମୂଳାଶାଗ | ୬୫ |
| ୧୪ । | ପୋଇଶାଗ | ୪୮ |
| ୧୫ । | ଧଣିଆଶାଗ | ୧୩୫ |
| ୧୬ । | ସେଓ | ୨-୮ |
| ୧୭ । | କଦଳୀ | ୨-୪ |
| ୧୮ । | ପଣସ | ୧୦ |
| ୧୯ । | ଫୁଲକୋବି | ୬୧ |
| ୨୦ । | କଲରା | ୨୩ ୩୧ |
| ୨୧ । | ଗାଜର | ୬ |

## ପଞ୍ଚମ ଅଧ୍ୟାୟ

# ଜୀବସାର-ଘ ( Vitamin-D )

**ଆବିଷ୍କାର :—**

୧୯୧୯ ମସିହାରେ ବୈଜ୍ଞାନିକ ମେଲାନବାଇ ଆବିଷ୍କାର କଲେ ଯେ କଡ଼ମାଛର ଯକୃତରୁ ବାହାରୁଥିବା ତେଲକୁ ଯଦି ଅସ୍ଥିକୋମଳ ରୋଗ ଭୋଗୁଥିବା କୁକୁରଙ୍କୁ ଖାଇବାକୁ ଦିଆଯାଏ, ତେବେ ସେମାନଙ୍କର ରୋଗ ଭଲ ହୋଇଯାଏ । ୧୯୨୨ ମସିହାରେ ମେକକୋଲମ୍‌ ଓ ତାଙ୍କ ସହକର୍ମୀମାନେ ପ୍ରମାଣ କଲେ ଯେ ଅସ୍ଥିକୋମଳ ରୋଗକୁ ଦୂର କରୁଥିବା ପଦାର୍ଥ ଜୀବସାର-କ ନୁହେଁ । ଏହା ପୂରାପୂରି ଜୀବସାର-କ ଠାରୁ ଅଲଗା । ୧୯୨୪ ମସିହାରେ ଷ୍ଟିନବାକ୍ ପ୍ରମାଣ କଲେ ଯେ ଅସ୍ଥିକୋମଳ ରୋଗୀଙ୍କ ଖାଦ୍ୟକୁ ପ୍ରାତଃକାଳୀନ ଅଲ୍‌ଟ୍ରାଭାୟୋଲେଟ୍ ରଶ୍ମିରେ ରଖି ଖାଇବାକୁ ଦେଲେ ସେମାନଙ୍କର ରୋଗ ଭଲ ହୋଇଯାଉଛି । ଏହା ପରେ ଜଣାପଡ଼ିଲା ତେଲରେ ଥିବା ଷ୍ଟେରଲ ଜାତୀୟ ପଦାର୍ଥ ଅଲଟ୍ରାଭାୟୋଲେଟ୍ ରଶ୍ମି ଦ୍ୱାରା ଜୀବସାର-ଘକୁ ପରିବର୍ତ୍ତିତ ହୋଇଯାଉଛି । ତେଲରେ ଥିବା ଏରଗୋଷ୍ଟେରଲକୁ ଅଲଟ୍ରାଭାୟୋଲେଟ୍ ରଶ୍ମିରେ ରଖି ସେଥିରୁ ଜୀବସାର-ଘ ରଶଙ୍ଗ ଓ ତାଙ୍କ ସହକର୍ମୀମାନେ ୧୯୩୧ ମସିହାରେ ଅଲଗା କରିଥିଲେ । ସେଙ୍କ ୧୯୩୭ ମସିହାରେ ଡିହାଇଡ୍ରୋକୋଲେଷ୍ଟେରଲକୁ ଅଲଟ୍ରାଭାୟୋଲେଟ ରଶ୍ମିରେ ରଖି ସେଥିରୁ ଦାନାଦାର ଜୀବସାର-ଘ ପ୍ରସ୍ତୁତ କରିପାରିଥିଲେ ।

## ଜୀବସାର 'ଘ'ର କାର୍ଯ୍ୟ

ଆମ ଶରୀରରେ ହାଡ଼ ଓ ଦାନ୍ତର ଅଭିବୃଦ୍ଧିରେ ଏହା ସାହାଯ୍ୟ କରେ । ଖାଦ୍ୟରୁ ଶରୀର ଭିତରକୁ କେଲସିୟମ ଓ ଫସଫରସ ଶୋଷିତ ହେବାରେ ଏହା ପ୍ରଧାନ ଭୂମିକା ଗ୍ରହଣ କରେ ।

### ଏହାର ଅଭାବ ଜନିତ ରୋଗ

ଜୀବସାର-ଘ ଶରୀରରେ କେଲସିୟମ ଓ ଫସଫରସକୁ ହାଡ଼ରେ ଜମିବାରେ ସାହାଯ୍ୟ କରେ । ଏହା ଫଳରେ ହାଡ଼ ଟାଣ ଓ ସୁଦୃଢ଼ ହୁଏ । ଜୀବସାର-ଘ ନଥିଲେ ଏହି ଦୁଇଟି ପଦାର୍ଥ ଖାଦ୍ୟରୁ ଶରୀର ଭିତରକୁ ଅବଶୋଷିତ ହୋଇ କିଛି କାମରେ ଲାଗି ପାରନ୍ତାନି, ଫଳରେ ହାଡ଼ ନରମ ଓ ବଙ୍କାଟଙ୍କା ହୋଇଯାନ୍ତି । ଏହାଫଳରେ ରୋଗୀ ବିକଳାଙ୍ଗ ହୋଇଯାଏ । ଏହାକୁ ଅସ୍ଥିକୋମଳ ରୋଗ କହନ୍ତି । ଏହି ରୋଗ ପିଲାମାନଙ୍କଠାରେ ଅଧିକ ଦେଖାଯାଏ । ଯେହେତୁ ଜୀବସାର-ଘ ଅଭାବରୁ ହାଡ଼ ନରମ ହୋଇଯାଏ, ତେଣୁ ଏହା ସହଜରେ ବଙ୍କେଇଯାଏ । ଏହି ରୋଗ ଆମ ଦେଶ ଅପେକ୍ଷା ପାଶ୍ଚାତ୍ୟ ପିଲାମାନଙ୍କୁ ବେଶି ହୁଏ ।

ବଡ଼ ମଣିଷଙ୍କୁ ମଧ୍ୟ ଏହି ରୋଗ ହୁଏ । ତାକୁ କୁହାଯାଏ ଅଷ୍ଟିଓମେଲେସିଆ । ଗରିବ ସ୍ତ୍ରୀ ଲୋକମାନେ ଉପଯୁକ୍ତ ଖାଦ୍ୟ ଅଭାବରୁ ଏହି ରୋଗ ଭୋଗନ୍ତି । ଜୀବସାର-ଘ ଅଭାବରୁ ସେମାନଙ୍କ ହାଡ଼ ନରମ ହୋଇଯାଇ ବଙ୍କେଇଯାଏ । ଶରୀରର ବିଭିନ୍ନ ଅଂଶରେ ଏହି ହାଡ଼ ବଙ୍କେଇଯିବା ଦେଖାଯାଏ । ଜୀବସାର ଘ ସହିତ କେଲସିୟମ ଓ ଫସଫରସ ଥିବା ଖାଦ୍ୟ ଖାଇବାକୁ ଦେଲେ ଏହି ରୋଗ ଭଲ ହୋଇଯାଏ ।

ଏହି ରୋଗ ଆମ ଦେଶ ସମେତ ଉଷ୍ଣମଣ୍ଡଳୀୟ ଦେଶମାନଙ୍କରେ ବେଶି ହୁଏନା । କାରଣ ଏହି ଦେଶମାନଙ୍କରେ ଯଥେଷ୍ଟ ସୂର୍ଯ୍ୟକିରଣ ପଡ଼େ । ସୂର୍ଯ୍ୟକିରଣରେ ଯେଉଁ ଅଲ୍ଟ୍ରାଭାୟୋଲେଟ ରଶ୍ମି ଥାଏ, ସେହି ରଶ୍ମିରେ ପିଲାମାନଙ୍କୁ ରଖିଲେ ସେମାନଙ୍କ ଅସ୍ଥିକୋମଳ ରୋଗ ଭଲ ହୋଇଯାଏ । ଏହାଫଳରେ ଶରୀରରେ ଯେଉଁ ଷ୍ଟେରଲ ଜାତୀୟ ପଦାର୍ଥ ଥାଏ ତାହା ଜୀବସାର-ଘ ରେ ପରିଣତ ହୋଇଯାଏ । ଆମ ଦେଶରେ ଯେଉଁ ରୀତି ଅଛି; ବୁଢ଼ୀମାମାନେ ଛୋଟ ଛୋଟ ପିଲାମାନଙ୍କୁ ତେଲ କଜଳ କରି ସାରି ସକାଳର କଅଁଳିଆ ଖରାରେ ଶୁଆଇ ଦିଅନ୍ତି, ତାହା ଏକ ଅତି ଭଲ ଅଭ୍ୟାସ । ଏହା ଫଳରେ ସେମାନଙ୍କ ଦେହରେ ଜୀବସାର-ଘ ସୃଷ୍ଟି ହୁଏ । ତେଣୁ ସେମାନଙ୍କର ଅସ୍ଥିକୋମଳ ରୋଗ ହେବା ସମ୍ଭାବନା କମିଯାଏ । ଏହି କାରଣ ଯୋଗୁଁ ଆମ ଦେଶରେ ଅସ୍ଥିକୋମଳ ରୋଗ କମ୍ ଦେଖାଯାଏ ।

## ଶରୀରର ଆବଶ୍ୟକତା ପରିମାଣ

ପିଲାମାନେ ଦିନକୁ ହାରାହାରି ୧୨.୨ ମାଇକ୍ରୋଗ୍ରାମ ଜୀବସାର-ଘ ଦରକାର କରନ୍ତି । ବଡ଼ ପିଲା ଓ ବୟସ୍କମାନେ ୫ ମାଇକ୍ରୋଗ୍ରାମ ଦରକାର କରନ୍ତି । ଗର୍ଭବତୀ ମହିଳାମାନେ ୧୦ ମାଇକ୍ରୋଗ୍ରାମ ଦରକାର କରନ୍ତି । ଯଦି ସକାଳୁଆ ସୂର୍ଯ୍ୟକିରଣ ଦେହ ଉପରେ ପଡ଼ୁଥାଏ, ତେବେ ଉପରୋକ୍ତ ପରିମାଣର ଅଧା ହେଲେ ବି ଚଳିବ । ଦୁଧରେ ଜୀବସାର-ଘ ଖୁବ୍ କମ୍ ପରିମାଣରେ ଥିବାରୁ ପିଲାମାନଙ୍କୁ ବିଶେଷତଃ ପାଶ୍ଚାତ୍ୟ ଦେଶର ପିଲାମାନଙ୍କୁ କଡ଼ଲିଭର ତେଲ ଦିଆଯିବା ଉଚିତ୍ । ଆମଦେଶର ପିଲାମାନେ ଖରାରେ ଆତଯାତ ହେଉଥିବାରୁ ସେମାନଙ୍କର ଏହି ଜୀବସାରର ଅଭାବ ପ୍ରାୟ ହୁଏନା ।

## ଅଧିକ ଜୀବସାର-ଘ ର ବଷାକ୍ତ ପ୍ରଭାବ

ଜୀବସାର-ଘର ଅଭାବ ହେଲେ ଯେମିତି ରୋଗ ହୁଏ, ଜୀବସାର-ଘର ଆଧିକ୍ୟ ହେଲେ ମଧ୍ଯ ନାନାପ୍ରକାର ରୋଗ ହୁଏ । ଏହା ହେଉଛି ଦୁଇପାଖିଆ ଧାରଥିବା ଛୁରି ଭଳି । ତେଣୁ ଏହାର ବ୍ୟବହାରରେ ସାବଧାନ ହେବା ଉଚିତ । ଜୀବସାର-ଘ ଶରୀରରେ ଅଧିକ ହେଲେ ବାନ୍ତି ମାଡ଼େ, କ୍ଷୁଧା କମିଯାଏ । ଖୁବ୍ ଶୋଷ ହୁଏ । ପିଲମାନେ ଦୁର୍ବଳ ଓ ହୁଣ୍ଡା ହୋଇଯାନ୍ତି । ମାଂସପେଶୀ ଦୁର୍ବଳ ହୋଇଯାଏ । ଏହା ଯଦି ଅଧିକ ଦିନ ରହେ ଧମନୀ ଶିରରେ କେଲସିୟମ ବସିଯାଇ ରୋଗୀକୁ ମୃତ୍ୟୁମୁଖକୁ ଟାଣିନଏ ।

ଜୀବସାର-ଘ ସାଧାରଣତଃ ପ୍ରାଣୀଜାତ ଖାଦ୍ୟପଦାର୍ଥରେ ବେଶି ଥାଏ । ଏହା ଉଦ୍ଭିଦଜାତ ଖାଦ୍ୟପଦାର୍ଥରେ ପ୍ରାପ୍ତ ନ ଥାଏ । ଏହା ତେଲରେ ଦ୍ରବଣୀୟ ଥିବାରୁ ପ୍ରାଣୀମାନଙ୍କ ଚର୍ବି ଓ ତେଲରେ ଏହା ମିଳେ ।

## ଜୀବସାର-ଘ ଥିବା ଖାଦ୍ୟ ପଦାର୍ଥ

| କ୍ର:ସ: | ଖାଦ୍ୟର ନାମ | କେତେ ମାଇକ୍ରୋଗ୍ରାମ୍ ଶହେ ଗ୍ରାମ୍‌ରେ ଖାଦ୍ୟ ଥାଏ |
|---|---|---|
| ୧ । | ହାଲିବୁଟ ମାଛ କଲିଜା ତେଲ | ୫୦୦-୧୦,୦୦୦ |
| ୨ । | କଡ଼ମାଛ କଲିଜା ତେଲ | ୨୦୦-୭୫୦ |
| ୩ । | ମଗରମାଛ ଯକୃତ ତେଲ | ୩୦-୧୦୦ |
| ୪ । | ତେଲ ଥିବା ମାଛ (ଯଥା ଇଲିସି, ଖଇଙ୍ଗା) | ୫ ୩୦ |
| ୫ । | କୁକୁଡ଼ା ଅଣ୍ଡା (ପୁରା) | ୧.୨୫-୧.୫ |

| | | |
|---|---|---|
| ୬ । | ଅଣ୍ଡାର ହଳଦିଆ ଅଂଶ | ୩.୪ |
| ୭ । | ଲହୁଣୀ | ୫-୧.୫ |
| ୮ । | ଘିଅ | ୫-୧.୫ |
| ୯ । | ଗୁଣ୍ଡଦୁଧ | ୪-.୬ |
| ୧୦ । | ଦୁଧ | .୦୫-୧ |

ଏକ ମାଇକ୍ରୋଗ୍ରାମ=୪୦ ଆନ୍ତର୍ଜାତିକ ଇଉନିଟ୍



# ଷଷ୍ଠ ଅଧ୍ୟାୟ

## ଜୀବସାର-ଚ (Vitamin-E)

**ଆବିଷ୍କାର :—**

୧୯୨୨ ମସିହାରେ ଇଭାନ୍ସ ଓ ବିସପ ଆବିଷ୍କାର କଲେ ଯେ ଏହି ଜୀବସାର ନହେଲେ ମଣିଷ ଓ ପ୍ରାଣୀମାନଙ୍କର ସନ୍ତାନ ଉତ୍ପାଦିକା ଶକ୍ତି ହ୍ରାସ ପାଏ । ଏହାକୁ ସେମାନେ ଜୀବସାର-ଚ ବା ଭିଟାମିନ ଇ ନାମ ଦେଲେ । ପରେ ଜଣାପଡ଼ିଲା ଜୀବସାର ଚ ଯାହା, ଆଲଫା ଓ ବିଟା ଟକୋଫେରଲ ସେଇଆ ।

ଜୀବସାର ଚ ଚର୍ବି ଓ ତେଲରେ ଦ୍ରବଣୀୟ, ଜଳରେ ଦ୍ରବଣୀୟ ନୁହେଁ । ତେଣୁ ଏହା ପ୍ରାଣୀଜ ଓ ଉଦ୍ଭିଜ୍ଜ ତେଲରେ ବେଶି ଥାଏ ।

### ଅଭାବ ଜନିତ ରୋଗ

ଜୀବସାର ଚର ଅଭାବରୁ ଆଉ କେତେ ପ୍ରକାର ରୋଗ ହୁଏ । ସେଥିଭିତରୁ ଯକୃତର ନେକ୍ରୋସିସ ରୋଗ, ମାଂସପେଶୀର ଦୁର୍ବଳତା ରୋଗ ପ୍ରଧାନ । ଏହି ଜୀବସାର ଅଭାବରେ କୋଷର ସୂକ୍ଷ୍ମ ଝିଲ୍ଲୀ କ୍ଷୟପ୍ରାପ୍ତ ହୁଏ । ଯକୃତରେ ନାନା କ୍ଷୟ ରୋଗ ଦେଖାଦିଏ । କେତେକଙ୍କ ମତରେ ଏହି ଜୀବସାରର ଅଭାବହେଲେ ସ୍ତ୍ରୀ ମାନଙ୍କର ବାରମ୍ବାର ଗର୍ଭ ନଷ୍ଟ ହୁଏ ।

## ଦୈନିକ ଆବଶ୍ୟକତା

ବୟସ୍କ ଲୋକମାନଙ୍କର ଦିନକୁ ହାରାହାରି ୧୦ ମିଲିଗ୍ରାମ ଜୀବସାର-ଚ ଦରକାର । ଗର୍ଭବତୀ ଓ ଦୁଗ୍‌ଧବତୀ ମହିଳା-ମାନେ ଏହାଠାରୁ ଅଧିକ ଜୀବସାର-ଚ ଦରକାର କରନ୍ତି । ତେବେ ସୁଖର କଥା, ଆମ ଦେଶରେ ଏହି ଜୀବସାର-ଚର ଅଭାବ ଖୁବ୍ କମ୍ ଘଟେ । ଏହି ଜୀବସାର ଗଜାବୁଟ ଓ ଗଜାମୁଗରେ ଅଧିକ ପରିମାଣରେ ଥାଏ । ତେଣୁ କେତେକ ପର୍ବପର୍ବାଣିରେ ଆମର ସ୍ତ୍ରୀ ଲୋକମାନେ ଗଜାବୁଟ ଓ ଗଜାମୁଗ ଖାଇବାର ଯେଉଁ ବିଧି ଅଛି, ସେଥିରେ ଜୀବସାର-ଚ ସେମାନଙ୍କ ଶରୀରକୁ ଯାଉଥିବାରୁ ସେମାନଙ୍କର ସନ୍ତାନ ଉତ୍ପାଦିକା ଶକ୍ତି ହ୍ରାସ ପାଏନି । ଆମ ସ୍ତ୍ରୀ ଲୋକମାନେ ପୁତ୍ର କନ୍ୟା ପାଇଁ ଯେଉଁ ଦୁତିଆ ଓଷା ବା ମୂଳାଷ୍ଟମୀ ପୂଜା କରନ୍ତି, ସେଥିରେ ଗଜାମୁଗ, ଗଜାବୁଟ ଖାଇବାର ବିଧି ଅଛି । ତେଣୁ ସେମାନେ ସେହି ପୂଜା କରି ସନ୍ତାନ ସନ୍ତତି ଲାଭ କରିବା କିଛି ବିଚିତ୍ର ନୁହେଁ ।

ଗହମଗଜା, ମକା ଗଜା ତେଲରେ ସବୁଠାରୁ ଅଧିକ ପରିମାଣରେ ଏହି ଜୀବସାର ରହିଛି । ସେହିପରି ମୁଗଗଜା ଓ ବୁଟ ଗଜା ମଧ୍ୟ ଏହାର ଏକ ଉତ୍କୃଷ୍ଟ ପ୍ରାପ୍ତି ସ୍ଥଳ ।

### ଜୀବସାର-ଚ ର ଆଧିକ୍ୟ ହେଲେ କ'ଣ ହୁଏ ?

ଜୀବସାର-ଚ ସାମାନ୍ୟ କିଛି ଅଧିକା ଖାଇଲେ ସେମିତି କିଛି କ୍ଷତି ହେବାର ଜଣାଯାଇ ନାହିଁ । କିନ୍ତୁ ଦିନକୁ ୫୦୦—୧୦୦୦ ମିଲିଗ୍ରାମ ଖାଇଲେ ଧମନୀ ନଷ୍ଟ, ମାଂସପେଶୀ ଦୁର୍ବଳତା ଆଦି ରୋଗ ଦେଖାଦିଏ । ହୃଦରୋଗ ମଧ୍ୟ ହେବାର ଦେଖାଯାଏ । ଚର୍ମରୋଗ ଓ ମଧୁମେହ ରୋଗ ମଧ୍ୟ ହୋଇଥାଏ ।

## କେଉଁ କେଉଁ ଖାଦ୍ୟରେ ଜୀବସାର-ଚ ଅଛି ତାହାଁର ଏକ ତାଲିକା

| କ୍ର:ସଂ: | ଖାଦ୍ୟର ନାମ | ପ୍ରତି ଶହେଗ୍ରାମ ଖାଦ୍ୟରେ କେତେ ମିଲିଗ୍ରାମ ଥାଏ |
|---|---|---|
| ୧ । | ବାର୍ଲି | ୩.୨ |
| ୨ । | ଅକାଣ୍ଡିଆ ଚାଉଳ | ୨.୪ |
| ୩ । | ଅଟା | ୨.୨ |
| ୪ । | ନଡ଼ିଆତେଲ | ୮.୩ |
| ୫ । | ମକାତେଲ | ୯୧.୦ |
| ୬ । | କପାମଞ୍ଜି ତେଲ | ୮୧ |
| ୭ । | ସୋରିଷତେଲ | ୩୨ |
| ୮ । | ବାଦାମତେଲ | ୨୨ |
| ୯ । | କୁଣ୍ଡା ତେଲ | ୯୧ |
| ୧୦ । | ସୋୟାବିନ ତେଲ | ୧୧୮ |
| ୧୧ । | ଗହମଗଜା ତେଲ | ୨୨୫ |
| ୧୨ । | ବନ୍ଧାକୋବି | .୧ |
| ୧୩ । | ବିଲାତି ବାଇଗଣ | .୭ |
| ୧୪ । | କମଳାଲେମ୍ବୁ | .୨ |
| ୧୫ । | ଚିନାବାଦାମ | ୯.୩ |
| ୧୬ । | ଅଣ୍ଡା | .୨ |
| ୧୭ । | ମାଂସ | ୩.୮ |
| ୧୮ । | ଲହୁଣୀ | ୨.୪ |
| ୧୯ । | ଛେନା | ୧ |
| ୨୦ । | ଦୁଧ | .୧ |

## ସପ୍ତମ ଅଧ୍ୟାୟ

# ଜୀବସାର—କେ (Vitamin-K)

**ଅବିଷ୍କାର :—**

୧୯୩୪ ମସିହାରେ ବୈଜ୍ଞାନିକ ଡ଼ାମ (Dam) କୁକୁଡ଼ା ଛୁଆମାନଙ୍କୁ କେତେକ ପ୍ରକାର ଖାଦ୍ୟ ବ୍ୟତୀତ ସବୁପ୍ରକାର ଜୀବସାର ଓ ସବୁ ପ୍ରକାର ଖାଦ୍ୟ ଦେଇ ଦେଖିଲେ ଯେ କୁକୁଡ଼ା ଛୁଆମାନଙ୍କର ରକ୍ତସ୍ରାବ ହେଲେ, ତାହା ଆଉ ବନ୍ଦ ହେଉନ । ତେବେ ସେମାନଙ୍କୁ ଆଲଫା ଆଲଫା ବା ପଚସାଇଥିବା ମାଛ ଖତ ଦେଲେ ସେ ରୋଗ ଭଲ ହେଉଛି । ନିଶ୍ଚୟ କୌଣସି ଏକ ଅଜଣା ଜୀବସାରର ଏହା କାମ । ଡ଼ାମ୍ ସେ ଜୀବସାରର ନାମଦେଲେ ଜୀବସାର-କେ । ୧୯୩୯ ମସିହାରେ ଡ଼ାମ ଓ କେରର ସେହି ଭିଟାମିନକୁ ଅଲଗା କଲେ । ଏହା ଦୁଇ ପ୍ରକାରର ଭିଟାମିନର ମିଶ୍ରଣ, ଯଥା— ଭିଟାମିନ-କେ ୧ ଓ ଭିଟାମିନ-କେ-୨ । ଏହା ମଧ୍ୟ ଚର୍ବିରେ ଦ୍ରବଣୀୟ, ଜଳରେ ଦ୍ରବଣୀୟ ନୁହେଁ । ଏହା ଯକୃତରେ ପ୍ରୋଥ୍ରୋମବିନ ସୃଷ୍ଟିରେ ସାହାଯ୍ୟ କରେ । ଏହା ଅଭାବରେ ଏମିତି ରକ୍ତସ୍ରାବ ହୁଏ, ଯା ଫଳରେ ଶରୀରର କୌଣସି ସ୍ଥାନ କଟିଗଲେ ରକ୍ତ ବହିବା ସହଜରେ ବନ୍ଦ ହୁଏନ ।

### ଅଭାବ ଜନିତ ରୋଗ

ଏହି ଜୀବସାର ରକ୍ତକୁ ଜମାଟବାନ୍ଧିବାରେ ସାହାଯ୍ୟ କରେ । ଆମ ଖାଦ୍ୟରେ ଯଥେଷ୍ଟ ପରିମାଣରେ ଏହି ଭିଟାମିନ ଥିଲେହେଁ ଯକୃତ ଓ ଅନ୍ତ୍ରନଳୀରେ ଯଦି କୌଣସି ରୋଗ ଥାଏ, ତେବେ ଏହା ଶରୀର ମଧ୍ୟକୁ ଠିକ ଭାବରେ ବିଶୋଷିତ ହୋଇପାରେନ । ତେଣୁ ଏହାର ଅଭାବଜନିତ ରୋଗ ହୁଏ । ମା'ମାନଙ୍କ ଖାଦ୍ୟରେ

ଯଦି ଏହି ଜୀବସାର କମ୍ ଥାଏ, ତେବେ ସେମାନଙ୍କ ଜନ୍ମିତ ଶିଶୁ ଏହି ଅଭାବ ଯୋଗୁଁ କଷ୍ଟ ପାଏ ।

ଏହି ଜୀବସାର ପ୍ରାଣୀଜ ପଦାର୍ଥରେ କମ୍ ଥାଏ, ଉଦ୍ଭିଜ ପଦାର୍ଥରେ ବେଶି ଥାଏ । ଗାଈ ଦୁଧରେ ଏହି ଜୀବସାର ଯେଉଁ ପରିମାଣରେ ଥାଏ, ଗାଈ ଦୁଧ ଖାଉଥିବା ଶିଶୁମାନେ ଏହି ଜୀବସାରର ଅଭାବ ଭୋଗନ୍ତିନ ।

**ଜୀବସାର-କେ କେଉଁ ଖାଦ୍ୟରେ ଥାଏ**

| କ୍ର:ସ: | ଖାଦ୍ୟର ନାମ | ଶହେ ଗ୍ରାମରେ କେତେ ମାଇକ୍ରୋଗ୍ରାମ ଥାଏ |
|---|---|---|
| ୧ । | ଆଲଫା ଆଲଫା | ୪୨୫-୮୫୦ |
| ୨ । | ବନ୍ଧାକୋବି | ୨୫୦ |
| ୩ । | ଫୁଲକୋବି | ୨୭୫ |
| ୪ । | ପୋଇ | ୩୩୪ |
| ୫ । | କଳଜା | ୧୧୫-୨୩୦ |
| ୬ । | ସୋୟାବିନ | ୧୯୦ |
| ୭ । | ମଟର | ୧୧୦ |
| ୮ । | ଗହମ | ୮୦ |
| ୯ । | ଗହମଗଜା | ୩୭ |
| ୧୦ । | କଞ୍ଚା ବିଲାତିବାଇଗଣ | ୪୯ |
| ୧୧ । | ପାଚିଲା ବିଲାତି ବାଇଗଣ | ୨୪ |
| ୧୨ । | ଆଳୁ | ୨୦ |
| ୧୩ । | ଗାଜର | ୧୦ |
| ୧୪ । | କଖାରୁ | ୬ |
| ୧୫ । | ଗାଈ ଦୁଧ | ୬ |

## ଅଷ୍ଟମ ଅଧ୍ୟାୟ

# ଜୀବସାର-ପି (Vitamin-P)

**ଆବିଷ୍କାର କାହାଣୀ :—**

ସେଣ୍ଟ ଗିଓର୍ଗି ୧୯୩୬ ମସିହାରେ ପେପ୍ରିକା ଓ ଲେମ୍ବୁ ରସରେ ଜୀବସାର-ଗ ବ୍ୟତୀତ ଆଉ ଏକ ଜୀବସାରର ସୂଚନା ଥାଇଲେ, ଯାହାକି କୈଶିକ ଶିରର ସୁସ୍ଥତା ରକ୍ଷା କରିବାରେ ସାହାଯ୍ୟ କରେ । ସେ ଏହାର ନାମ ଜୀବସାର-ପି ଦେଲେ । ୧୯୫୦ ମସିହାରେ ଏହାର ନାମ ଭିଟାମିନ-ପି ବଦଳରେ ବାୟୋଫ୍ଲେଭୋନଏଡ଼ ରଖାଗଲା ।

### ଅଭାବ ଜନିତ ରୋଗ

ଏହି ଜୀବସାରର ଅଭାବ ହେଲେ କୈଶିକ ନଳୀ ରକ୍ତ ପ୍ରବାହରେ ବାଧା ପ୍ରଦାନ କରେ । ଏହା ଫଳରେ ଖୁବ୍ କଷ୍ଟ ହୁଏ ଓ ରକ୍ତସ୍ରାବ ହୁଏ । ଏହାର ଅଭାବରେ ଗୋଡ଼ ଓ କାନ୍ଧରେ ବ୍ୟଥା ଅନୁଭୂତ ହୁଏ । ଜଣେ ସହଜରେ ହାଲିଆ ହୋଇଯାଏ । ଏହି ଜୀବସାର ଖାଇଲେ ଉପରୋକ୍ତ ଅବସ୍ଥା ଦୂର ହୁଏ ।

ମଣିଷର ଦେହକୁ କେତେ ପରିମାଣର ଏହି ଜୀବସାର ଦରକାର ଜଣାଯାଇନି । ତେବେ ଆବଶ୍ୟକ ପରିମାଣର ଫଳମୂଳ ଓ ପନିପରିବା ପ୍ରତିଦିନ ଖାଉଥିଲେ ଏହାର ଅଭାବ ପରିଲକ୍ଷିତ ହୁଏନି । ଏହି ଜୀବସାର ଆମ ଶରୀରକୁ ଅଧିକ ଗଲେ ସେମିତି କିଛି କୁପ୍ରଭାବ ଦେଖାଏନି । ନିମ୍ନଲିଖିତ ଖାଦ୍ୟପଦାର୍ଥରେ ଏହି ଜୀବସାର ଥାଏ ।

**ଜୀବସାର-ପି ଥିବା ଖାଦ୍ୟ ପଦାର୍ଥ**

| କ୍ର:ସଂ: | ଖାଦ୍ୟର ନାମ | ଶହେ ଗ୍ରାମରେ କେତେ ଆନ୍ତର୍ଜାତିକ ଇଉନିଟ ଥାଏ |
|---|---|---|
| ୧ । | ସେଓ | ୬୦ |
| ୨ । | ବିଟ ମୂଳ | ୧୫ |
| ୩ । | ବନ୍ଧା କୋବି | ୬୦ |
| ୪ । | ଗାଜର | ୪୦ |
| ୫ । | ଫୁଲକୋବି | ୪୦ |
| ୬ । | ଚେରି | ୬୦ |
| ୭ । | ଲେମ୍ବୁ ଚୋପା | ୫୦୦ |
| ୮ । | ଲେମ୍ବୁ ରସ | ୪୫୦ |
| ୯ । | କମଳାଲେମ୍ବୁ | ୪୯୦ |
| ୧୦ । | ମଟର | ୪୦ |
| ୧୧ । | ଆଳୁ | ୨୫-୪୦ |
| ୧୨ । | ପୋଇ | ୧୩୦ |
| ୧୩ । | ବିଲାତିବାଇଗଣ | ୬୦-୭୦ |
| ୧୪ । | ବାଦାମ (ଓ୍ୱାଲନଟ) | ୧୦୦ |
| ୧୫ । | ଲେଟ୍ୟୁସ | ୮୦-୧୦୦ |

# ନବମ ଅଧ୍ୟାୟ

## ହରମୋନ୍

**ଆବିଷ୍କାର କାହାଣୀ :—**

ଆମ ଶରୀରର ବିଭିନ୍ନ ଅଂଶରେ ନାନାପ୍ରକାର ଗ୍ରନ୍ଥି ପରିଦୃଷ୍ଟ ହୁଏ । ସେଗୁଡ଼ିକ ସଦାସର୍ବଦା ନାନାପ୍ରକାର ତରଳ ପଦାର୍ଥ କ୍ଷରଣ କରିଥାନ୍ତି । ଉଦାହରଣ ସ୍ୱରୂପ ଆମ ପାଟିରେ ଥିବା ଲାଳଗ୍ରନ୍ଥି । ଏଥିରୁ ଲାଳ ଭଳି ଏକ ତରଳ ପଦାର୍ଥ ବାହାରି ଆମ ପାଟିକୁ ସର୍ବଦା ଓଦା ରଖେ ଓ ଖାଦ୍ୟ ଗ୍ରହଣ କରିବା ସମୟରେ ଖାଦ୍ୟ ସହ ମିଶି ପେଟ ଭିତରକୁ ଯାଇ ଖାଦ୍ୟ ହଜମ କରିବାରେ ସାହାଯ୍ୟ କରେ । ସେହିଭଳି ସ୍ୱେଦ ଗ୍ରନ୍ଥିରୁ ଝାଳ ବାହାରେ, ଲସିକା ଗ୍ରନ୍ଥିରୁ ରସ ବାହାରି ଆମ ଶରୀରରେ ନାନା କାର୍ଯ୍ୟରେ ଲାଗେ । ଏହିଭଳି ବହୁ ଗ୍ରନ୍ଥି ଆମ ଶରୀରର ବିଭିନ୍ନ ସ୍ଥାନରେ ରହି ଆମ ଶରୀରର ନାନାବି କାର୍ଯ୍ୟ କରୁଛି । ଏହି ଗ୍ରନ୍ଥିଗୁଡ଼ିକ ନଳୀଯୁକ୍ତ । ସେହି ନଳୀ ଦେଇ ବିଭିନ୍ନ କ୍ଷରଣ କ୍ଷରିତ ହୁଏ ।

ଏସବୁକୁ ଛାଡ଼ି ଆମ ଦେହରେ ଆଉ କେତେକ ଗ୍ରନ୍ଥି ଅଛି, ଯେଉଁଗୁଡ଼ିକରେ ନାଳ ନାହିଁ । ଏଗୁଡ଼ିକୁ ଅନାଳଗ୍ରନ୍ଥି କୁହାଯାଏ । ବହୁଦିନ ପର୍ଯ୍ୟନ୍ତ ବୈଜ୍ଞାନିକମାନେ ଜାଣିପାରି ନ ଥିଲେ, ଏହି ଗ୍ରନ୍ଥିଗୁଡ଼ିକର କାମ କଅଣ ଓ ଏଗୁଡ଼ିକ ଆମ ଶରୀରରେ ଅଛି

କାହିଁକି ? ଏଗୁଡ଼ିକ ଆମ ଶରୀରର ଅନାବଶ୍ୟକ ଅଂଶ ବୋଲି ପ୍ରଥମେ ଲୋକେ ଭାବୁଥିଲେ । ଭଗବାନ ଭୁଲ୍‌ବଶତଃ ଏଗୁଡ଼ିକ ତିଆରି କରି ପକାଇଛନ୍ତି ବୋଲି ଅନେକେ ଏହାକୁ ଭଗବାନଙ୍କ ଭୁଲ ବୋଲି କହୁଥିଲେ । କିନ୍ତୁ ସବୁଠାରୁ ମଜାକଥା ହେଉଛି ଯେ ଭଗବାନଙ୍କର ଏହି ତଥାକଥିତ ଭୁଲଟି ବର୍ତ୍ତମାନ ସାଧାରଣ ଜୀବଜଗତକୁ ଯେଉଁଭଳି ଭାବରେ ପ୍ରଭାବିତ କରୁଛି ତାହା ଶୁଣିଲେ ସ୍ତବ୍ଧ ନହୋଇ ରହି ହୁଏନି । ବର୍ତ୍ତମାନ ପ୍ରତିପାଦିତ ହୋଇଛି ଯେ, ଆମ ଶରୀରର ସବୁଠାରୁ ଆବଶ୍ୟକୀୟ ଅଂଶ ହେଉଛି ଏହି । ଏଥିରୁ ଯେଉଁସବୁ କ୍ଷରଣ ସୃଷ୍ଟି ହେଉଛି, ତାହା ଆମ ଶରୀରର ବୃଦ୍ଧି ଠାରୁ ଆରମ୍ଭ କରି ରୋଗ ପ୍ରତିରୋଧୀ କ୍ଷମତା, ରୂପ ଯୌବନ, ସୌନ୍ଦର୍ଯ୍ୟ ସବୁକିଛିକୁ ନିୟନ୍ତ୍ରଣ କରୁଛି । ଏହି ଗ୍ରନ୍ଥିରୁ ଏକ ପ୍ରକାର କ୍ଷରଣ ବାହାରୁଛି, ଯାହାକି ଆମ ଶରୀରରେ ଐନ୍ଦ୍ରଜାଲିକ ଶକ୍ତିସମ୍ପନ୍ନ ଗୁଣ ଦେଖାଏ । ଏହି କ୍ଷରଣର ନାମ ହେଉଛି ହରମୋନ । ହରମୋନ ଶବ୍ଦଟି ଗ୍ରୀକ୍ ଶବ୍ଦ ହରମାଓ "Hormao"ରୁ ସୃଷ୍ଟ, ଯାହାର ଅର୍ଥ ହେଉଛି "I Excite" ଅର୍ଥାତ୍ "ମୁଁ ଉତ୍ତେଜିତ କରାଏ" । ହରମୋନର ଆକ୍ଷରିକ ଅର୍ଥ ହେଲା ଯାହାକି ଶରୀରର କେତେ ଅଂଶକୁ ଉତ୍ତେଜିତ କରାଏ, ଫଳରେ କେତେକ କ୍ଷରଣ କ୍ଷରିତ ହୁଏ ।

ଉପରୋକ୍ତ ଅନାଳ ଗ୍ରନ୍ଥି ମଧ୍ୟରେ ପିଚୁଇଟାରୀ, ଥାଇରଏଡ଼ ପାରାଥାଇରଏଡ଼, ଅଗ୍ନ୍ୟାଶୟ, ଆଡ୍ରେନେଲ, ଥାଇମସ୍, ପୁଂ ଓ ସ୍ତ୍ରୀ ଯୌନଗ୍ରନ୍ଥି ଆଦି ପ୍ରଧାନ । ଏହି ଗ୍ରନ୍ଥିଗୁଡ଼ିକରୁ ଯେଉଁ କ୍ଷରଣ କ୍ଷରିତ ହୁଏ, ସେଗୁଡ଼ିକ ସିଧାସଳଖ ରକ୍ତସ୍ରୋତ ସହିତ ମିଶି ଶରୀରର ବିଭିନ୍ନ ସ୍ଥାନକୁ ଯାଇ ନାନା କାର୍ଯ୍ୟ କରିଥାଏ । ଏଥିପାଇଁ ଏହି ଗ୍ରନ୍ଥିଗୁଡ଼ିକୁ ଅନ୍ତଃସ୍ରାବୀ ଗ୍ରନ୍ଥି ମଧ୍ୟ କହିଥାନ୍ତି ।

ଏହି ଅନ୍ତଃସ୍ରାବୀଗ୍ରନ୍ଥି ଯେଉଁ କ୍ଷରଣ ସୃଷ୍ଟି କରେ ତାହା ହିଁ ହେଉଛି ହରମୋନ ବା ଅନ୍ତଃସ୍ରାବୀ କ୍ଷରଣ ଓ ଏହା ସିଧାସଳଖ ରକ୍ତସହିତ ମିଶି ଶରୀରର ବିଭିନ୍ନ ସ୍ଥାନକୁ ଯାଇ ଶରୀରର ରକ୍ଷା, ବୃଦ୍ଧି, ନିୟନ୍ତ୍ରଣ ଓ ରୋଗ ପ୍ରତିରୋଧୀ ଆଦି କାର୍ଯ୍ୟରେ ସାହାଯ୍ୟ କରେ, ଶରୀରର ଅଭିବୃଦ୍ଧି ଓ ରକ୍ଷଣା ବେକ୍ଷଣରେ ଭିଟାମିନ ଭଳି ହରମୋନ କାର୍ଯ୍ୟ କରିଥାଏ । ଉଭୟେ ଖୁବ୍ କମ୍ ପରିମାଣରେ ଆମ ଶରୀର ପାଇଁ ଦରକାର ହୋଇଥାନ୍ତି । ତେବେ ତଫାତ୍ ହେଉଛି ଭିଟାମିନକୁ ଖାଦ୍ୟସହିତ ବାହାରୁ ଯୋଗାଇବାକୁ ପଡ଼େ, ଅଥଚ ହରମୋନ୍ ଶରୀର ମଧ୍ୟରେ ପ୍ରସ୍ତୁତ ହୁଏ ।

ଆମ ଶରୀରର କେତେକ ଗ୍ରନ୍ଥିରୁ ଦୁଇପ୍ରକାର କ୍ଷରଣ କ୍ଷରିତ ହୁଏ । ଉଦାହରଣ ସ୍ୱରୂପ ଅଗ୍ନ୍ୟାଶୟ ଗ୍ରନ୍ଥି । ଏଥିରୁ ଗୋଟାଏ ପ୍ରକାର କ୍ଷରଣ ବାହାରେ, ଯାହାକୁ ଆମେ ଅଗ୍ନ୍ୟାଶୟ ରସ କହୁଁ । ଏହା କ୍ଷୁଦ୍ରାନ୍ତ୍ରକୁ ଯାଇ ଖାଦ୍ୟପଦାର୍ଥର ହଜମ ପ୍ରକ୍ରିୟାରେ ସାହାଯ୍ୟ କରେ । ଏହାକୁ ବାହ୍ୟ କ୍ଷରଣ କୁହାଯାଏ । ଅଗ୍ନାଶୟରୁ ଏହି ବାହ୍ୟ କ୍ଷରଣ ବ୍ୟତୀତ ଆଉ ଗୋଟିଏ ଅନ୍ତଃକ୍ଷରଣ କ୍ଷରିତ ହୁଏ । ଏହାକୁ ଅନ୍ତଃସ୍ରାବୀ କ୍ଷରଣ କୁହାଯାଏ । ଏହା ଇନ୍‌ସୁଲିନ୍ ନାମରେ ମଧ୍ୟ ପରିଚିତ । ଏହା ଅଗ୍ନ୍ୟାଶୟରୁ କ୍ଷରିତ ହୋଇ ସିଧାସଳଖ ରକ୍ତସ୍ରୋତ ସହିତ ମିଶେ ଓ ରକ୍ତରେ ଥାଇ ଶରୀରର ଚିନିଜାତୀୟ ଖାଦ୍ୟ ବିପାକକୁ ନିୟନ୍ତ୍ରଣ କରେ । ହରମୋନ୍ ଅନ୍ୟ କ୍ଷରଣ ଭଳି ପୈଷ୍ଟିକ ନଳୀ ମଧ୍ୟକୁ ଯାଇ ତପୂରେ ରକ୍ତସ୍ରୋତକୁ ଯାଏନି । କାରଣ ଅନେକ ହରମୋନ ଏମିତି ଅଛନ୍ତି ଯେ ସେମାନେ ପୈଷ୍ଟିକ ନଳୀ ଭିତରକୁ ଗଲେ ନଷ୍ଟ ହୋଇଯାନ୍ତି । ସେଥିପାଇଁ ସେମାନେ ସଦାସର୍ବଦା ସିଧାସଳଖ ରକ୍ତସ୍ରୋତ ସହିତ ମିଶିଥାନ୍ତି ।

ଏହି ଅନ୍ତଃସ୍ରାବୀ କ୍ଷରଣର ନାମ ରଖିଥିଲେ ହରମୋନ ୧୮୮୨ ମସିହାରେ ଦୁଇଜଣ ବୈଜ୍ଞାନିକ । ସେମାନେ ହେଲେ ବେଲିସ୍ ଓ ଷ୍ଟାରଲିଙ୍ଗ । ୧୮୮୯ ମସିହାରେ ଜନୈକ ଫରାସୀ ବୈଜ୍ଞାନିକ ବ୍ରାଉନ୍‌ସେକୁଆର୍ଡ଼ ଏକ ଚମତ୍କାର ତଥ୍ୟ ପ୍ରକାଶ କରି ସାରା ପୃଥିବୀକୁ ଚକିତ କରି ଦେଇଥିଲେ । ସେ ପ୍ରକାଶ କରିଥିଲେ; ଯେଉଁମାନଙ୍କର ଯୌନ କ୍ଷମତା ଲୋପ ପାଇଛି, ସେମାନଙ୍କୁ ଏକ ପ୍ରକାର ଯୌନଗ୍ରନ୍ଥି କ୍ଷରଣ ଇଞ୍ଜେକ୍‌ସନ୍ ଦେଲେ ସେମାନଙ୍କ ଯୌନ କ୍ଷମତା ପୁଣି ଫେରିଆସି ପାରୁଛି । କିନ୍ତୁ ପରେ ବୈଜ୍ଞାନିକଙ୍କର ଏହି ଦାବୀଟି ଯଥାର୍ଥ ନୁହେଁ ବୋଲି ପ୍ରତିପାଦିତ ହୋଇଥିଲେ ହେଁ ଏହି ଧାରଣାଟି ବୈଜ୍ଞାନିକମାନଙ୍କ ଭିତରେ ଆଲୋଡ଼ନ ସୃଷ୍ଟି କରିଥିଲା, ଯାହାଫଳରେ ସେମାନେ ଅନ୍ତଃସ୍ରାବୀ କ୍ଷରଣ ଆଡ଼କୁ ଅଧିକ ଆକୃଷ୍ଟ ହୋଇପଡ଼ିଥିଲେ । ଆଡ୍ରିନାଲ ଗ୍ରନ୍ଥିରୁ ଜାତ କ୍ଷରଣ ଯଦି କମିଯାଏ, ତେବେ ଏକପ୍ରକାର ରୋଗ ହୁଏ ବୋଲି ବ୍ରିଟିଶ୍ ବୈଜ୍ଞାନିକ ଏଡ଼ିସନ୍ ପ୍ରକାଶ କରିଥିଲେ ଓ ସେହି ରୋଗ ତାଙ୍କ ନାମାନୁସାରେ ଏଡ଼ିସନ୍ ରୋଗ ବୋଲି ପରିଚିତ ହୋଇଥିଲା । ମଣିଷମାନଙ୍କ ଭଳି ପ୍ରାଣୀମାନଙ୍କ ଶରୀରରେ ମଧ୍ୟ ଏହିଭଳି ଅନ୍ତଃସ୍ରାବୀ ଗ୍ରନ୍ଥି ଅଛି ଓ ସେ ସବୁଥିରୁ ମଧ୍ୟ ଏହିଭଳି କ୍ଷରଣ କ୍ଷରିତ ହୁଏ । ବିଭିନ୍ନ ଗ୍ରନ୍ଥିକୁ କାଟି ବାଦ୍ କରିଦେଇ କ୍ଷରଣର ଅଭାବ ଶରୀର ଉପରେ କ'ଣ ହୁଏ, ସହଜରେ ପ୍ରାଣୀମାନଙ୍କ ଉପରେ ପରୀକ୍ଷା କରି ଜାଣିହୁଏ । କେତେକ କ୍ଷେତ୍ରରେ ଏହି ପ୍ରାଣୀମାନଙ୍କ ଶରୀରରୁ ଜାତ ହରମୋନ୍‌କୁ ମଣିଷ ଶରୀର ଉପରେ ପରୀକ୍ଷା କରି ତାହାର ପ୍ରଭାବ ଜାଣି ହୁଏ । କେବଳ ସେତିକି ନୁହେଁ ପ୍ରାଣୀ ଦେହରୁ ଜାତ ହରମୋନ ମଣିଷ ଦେହରେ ଦିଆଯାଇ ନାନା ରୋଗକୁ ଭଲ କରାଯାଇ ପାରୁଛି । ଯେପରି ଇନ୍‌ସୁଲିନ୍ ମଧୁମେହ ରୋଗକୁ

ଭଲ କରେ, ତାହା ଏକ ହରମୋନ ଭାବରେ ପ୍ରାଣୀ ଦେହରୁ ଆହରଣ କରାଯାଇ ଥାଏ ।

**ହରମୋନର ଶ୍ରେଣୀ ବିଭାଗ**

ହରମୋନଗୁଡ଼ିକ ରସାୟନିକ ପଦାର୍ଥ, କ୍ଷରଣରେ ଅତି ଅଳ୍ପ ପରିମାଣରେ ଥାଏ । ପ୍ରକୃତି ଦୃଷ୍ଟିରୁ ଏ ଗୁଡ଼ିକ ତିନି ଶ୍ରେଣୀର, ଯଥା :

(କ) **ପ୍ରୋଟିନ ବା ପଲିପେପ୍‌ଟାଇଡ୍** ଜାତୀୟ । **ଇନ୍‌ସୁଲିନ୍ ଓ ଏ.ସି.ଟି ଏଇଚ୍** ଏହି ବିଭାଗରେ ଅନ୍ତର୍ଭୁକ୍ତ ।

(ଖ) **ଏରୋମେଟିକ୍ ଜାତୀୟ**—ଏହି ବିଭାଗରେ **ଥାଇରକ୍ସିନ ଓ ଏଡ୍ରିନେଲିନ୍ ଅନ୍ତର୍ଭୁକ୍ତ** ।

(ଗ) **ଷ୍ଟେରଏଡ୍ ଜାତୀୟ**—ଏହି ବିଭାଗରେ **କର୍ଟିସୋନ୍ ଓ ଯୌନ ହରମୋନ୍** ଅନ୍ତର୍ଭୁକ୍ତ ।

ନିମ୍ନରେ ବିଭିନ୍ନ ଅନାଳଗ୍ରନ୍ଥି ଓ ସେଥିରୁ କ୍ଷରିତ ହେଉଥିବା ହରମୋନର ଏକ ତାଲିକା ଦିଆଗଲା ।

| **ଅନାଳ ଗ୍ରନ୍ଥିର ନାମ** | **ଏଥିରୁ ଜାତ ହରମୋନର ନାମ** |
|---|---|
| ୧ । ପିଚୁଇଟେରୀ ଗ୍ରନ୍ଥି | ଭେସୋପ୍ରେସିନ୍ ଅକ୍ସିଟୋସିନ୍ ଶରୀର ବୃଦ୍ଧିକାରୀ ହରମୋନ, ଗନାଡ୍ରୋଟ୍ରୋପିକ ହରମୋନ୍ ଏସି.ଟିଏଇଚ୍ ଆଦି |
| ୨ । ଆଡ୍ରିନେଲ ଗ୍ରନ୍ଥି | ଏପିନେଫ୍ରିନ୍ ବା ଏଡ୍ରିନେଲିନ କର୍ଟିସୋନ |
| ୩ । ଅଗ୍ନ୍ୟାଶୟ ଗ୍ରନ୍ଥି | ଇନ୍‌ସୁଲିନ୍, ଗ୍ଲୁକୋଗୋନ୍ |

| | | |
|---|---|---|
| ୪ । | ଥାଇରଏଡ୍ ଗ୍ରନ୍ଥି | ଥାଇରକ୍ସିନ |
| ୫ । | ପାରାଥାଇରଏଡ୍ ଗ୍ରନ୍ଥି | ପାରାଥାଇରଏଡ୍ ହରମୋନ ବା ପାରାଥୋରମୋନ୍ |
| ୬ । | ଗର୍ଭକୋଷ | ଏଷ୍ଟ୍ରୋନ୍ |
| ୭ । | କର୍ପସଲ୍ୟୁଟିୟୁମ୍ | ପ୍ରୋଜେଷ୍ଟେରନ |
| ୮ । | ଅଣ୍ଡକୋଷ | ଟେଷ୍ଟୋଷ୍ଟେରନ |
| ୯ । | ପ୍ଲେସେଣ୍ଟା (ଫୁଲ) | ପ୍ରୋଜେଷ୍ଟେରନ୍ |
| ୧୦ । | ପିନଏଲ୍ ଗ୍ରନ୍ଥି | ଠିକ୍ ରୂପେ ଜଣାନାହିଁ |
| ୧୧ । | ଥାଇମସ୍ ଗ୍ରନ୍ଥି | ପ୍ରତିପିଣ୍ଡସୃଷ୍ଟିକାରୀ ହରମୋନ |
| ୧୨ । | ପାକସ୍ଥଳୀ | ଗେଷ୍ଟ୍ରିନ୍ |

ସାରା ଶରୀରର ସାଧାରଣ କାର୍ଯ୍ୟକ୍ଷମତା, ଅଭିବୃଦ୍ଧି, ଦକ୍ଷତା ଆଦି ଗୁଣ ଏହି ହରମୋନ ଦ୍ୱାରା ପ୍ରଭାବିତ ହୁଏ । ଏହା ରକ୍ତରେ ଲବଣ, କେଲସିୟମ' ଓ ଶର୍କରାର ପରିମାଣକୁ ଯଥାଯଥ ଭାବରେ ଠିକ୍ ରଖେ, ସ୍ତ୍ରୀମାନଙ୍କ ଦେହରେ ମାସିକ ଋତୁସ୍ରାବ, କରାଏ । ଗର୍ଭଧାରଣ ଓ ପ୍ରସବ ପରେ ସ୍ତନ୍ୟରେ ଦୁଗ୍ଧ ଉତ୍ପାଦନକୁ ଏହି ହରମୋନ ନିୟନ୍ତ୍ରଣ କରେ । ସ୍ତ୍ରୀମାନଙ୍କର ଡିମ୍ବାଣୁ ଓ ପୁରୁଷମାନଙ୍କ ଶୁକ୍ରାଣୁ ଉତ୍ପାଦନରେ ପ୍ରଧାନ ଭୂମିକା ଗ୍ରହଣ କରେ । କିଶୋର ଅବସ୍ଥାରୁ ଯୁବକ ଅବସ୍ଥାକୁ ଆସିବାବେଳେ ଏହି ହରମୋନର କାର୍ଯ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ମଣିଷକୁ କେତେକ ହରମୋନର କ୍ଷରଣ ଯୁବାବସ୍ଥାରେ ରଖେ । ଏହି ହରମୋନ ଯୋଗୁଁ କେତେକ ଲୋକ ଅଧିକ ଦିନ ଟୋକାଳିଆ ଚେହେରା ରଖିପାରନ୍ତି ଓ ଏହାର ଅଭାବରେ ଅନ୍ୟମାନେ ଶୀଘ୍ର

ବୁଢ଼ା ଭଳିଆ ଦିଶନ୍ତି । ମଣିଷମାନଙ୍କ ଦେହରେ ଏହି ହରମୋନ ଯଦି ଯଥାଯଥ ପରିମାଣରେ କ୍ଷରିତ ନ ହୁଏ, ତେବେ ଲୋକମାନେ ଠିକ୍ ଭାବରେ ବଢି ପାରନ୍ତି ନାହିଁ । ବାମନ ହୋଇଯାନ୍ତି । କେତେକଙ୍କର ଗଳଗଣ୍ଡ ରୋଗ ସମେତ ମଧୁମେହ, ଚିଡ଼ଚିଡ଼ିଆ ପ୍ରକୃତି ସୃଷ୍ଟି ହୁଏ । ଝିଅମାନେ ପ୍ରାପ୍ତବୟସ୍କା ହୋଇପାରନ୍ତିନି, ସ୍ତ୍ରୀସୁଲଭ ଗୁଣ ହ୍ରାସ ପାଏ । ସ୍ତ୍ରୀ ହରମୋନ ଅଭାବରେ ସ୍ତ୍ରୀ ମାନେ ଅଣ୍ଡିରାଚଣ୍ଡୀ ହୋଇଯାନ୍ତି । କେତେକ ସ୍ତ୍ରୀଙ୍କ ମୁହଁରେ ନିଶ ଦାଢ଼ି ଉଠେ । ପୁରୁଷ ହରମୋନର ଅଭାବ ଯୋଗୁଁ କେତେକ ପୁରୁଷଙ୍କ ମୁହଁରେ ନିଶ ଦାଢ଼ି ଠିକ୍ ଭାବରେ ଉଠେନି, ସେମାନଙ୍କ ସ୍ୱର ସ୍ତ୍ରୀ ଲୋକମାନଙ୍କ ସ୍ୱରଭଳି ନରମ ହୁଏ, ଫଳରେ ସେମାନେ ମାଇଚିଆ ଭାବରେ ପରିଗଣିତ ହୁଅନ୍ତି ।



## ନବମ ଅଧ୍ୟାୟ

# ପିଟୁଇଟେରୀ ଗ୍ରନ୍ଥି ଓ ଏଥିରୁ ଜାତ ହରମୋନ

ପିଟୁଇଟେରୀ ଗ୍ରନ୍ଥିର ଅନ୍ୟନାମ ହେଉଛି ହାଇପୋ-ଫାଇସିସ । ଏହା ଆକାରରେ ପିଲମାନେ ଖେଳୁଥିବା ଗୋଲି ଠାରୁ ବଡ଼ ନୁହେଁ । ପ୍ରକୃତ ପକ୍ଷେ ଦେଖିଲେ ଏହା ଗୋଟିଏ ମଟର ଦାନା ଆକାରର । ଏହା ମସ୍ତିଷ୍କର ଠିକ୍ ତଳ ଅଂଶରେ ବିଦ୍ୟମାନ । ଏହା ଆମର ସବୁ ଅନାଳଗ୍ରନ୍ଥି ମଧ୍ୟରେ ଶ୍ରେଷ୍ଠ । ତେଣୁ ଏହାକୁ ଶ୍ରେଷ୍ଠଗ୍ରନ୍ଥି Master gland ଆଖ୍ୟା ଦିଆଯାଇଛି । ଏହା ଶରୀରର ଅନ୍ୟ ସମସ୍ତ ଅନ୍ତଃସ୍ରାବୀ ଗ୍ରନ୍ଥିକୁ ନିୟନ୍ତ୍ରଣ କରେ । ସେଥିପାଇଁ ଏଥିରୁ ଅଲଗା ଅଲଗା କ୍ଷରଣ କ୍ଷରିତ ହୁଏ । ପିଟୁଇଟେରୀରୁ ଯଦି ଏହି କ୍ଷରଣ ଠିକ୍ ରୂପେ ନ ଝରେ, ତେବେ କେତେକ ଅନ୍ତଃସ୍ରାବୀ ଗ୍ରନ୍ଥି ଅକାମୀ ହୋଇପଡ଼ନ୍ତି । ଏହି ଗ୍ରନ୍ଥିର ଦୁଇଟି ପାର୍ଶ୍ୱ ଅଛି । ଗୋଟିଏ ହେଉଛି ସାମନା ଅଂଶ (Anterior lobe) ଓ ଅନ୍ୟଟି ପଛ ଅଂଶ (Posterior lobe) । ଏହି ଦୁଇ ଅଂଶରୁ ଅଲଗା ଅଲଗା ହରମୋନ କ୍ଷରିତ ହୁଏ । ଅନ୍ୟ ଅନ୍ତଃସ୍ରାବୀ ଗ୍ରନ୍ଥିକୁ ନିୟନ୍ତ୍ରଣ କରୁଥିବା ହରମୋନଗୁଡ଼ିକ ସମ୍ମୁଖ ଅଂଶରୁହିଁ କ୍ଷରିତ ହୁଏ ।

### ପିଟୁଇଟେରୀ ଗ୍ରନ୍ଥିର ସାମନା ଅଂଶରୁ କ୍ଷରିତ ହେଉଥିବା ହରମୋନ୍

ଏହି ହରମୋନ ପ୍ରଧାନତଃ ଛଅ ପ୍ରକାରର ଅଟେ । ଏହା ଶରୀରର ଅଭିବୃଦ୍ଧିକୁ ନିୟନ୍ତ୍ରଣ କରେ । ତା'ଛଡ଼ା ଏହା

ଆଡ୍ରିନାଲ ଗ୍ରନ୍ଥି, ଥାଇମସ ଗ୍ରନ୍ଥି, ଥାଇରଏଡ଼ ଗ୍ରନ୍ଥି, ପୁଂଜନନ ଗ୍ରନ୍ଥି, ଗର୍ଭକୋଷ ଓ ସ୍ତ୍ରୀ ଲୋକମାନଙ୍କ ସ୍ତନ୍ୟ ଓ ପୁରୁଷମାନଙ୍କ ଯୌନାଙ୍ଗର ଅଭିବୃଦ୍ଧିକୁ ନିୟନ୍ତ୍ରଣ କରେ । ଏଥି-ପାଇଁ ଅଲଗା ଅଲଗା ହରମୋନ କ୍ଷରିତ ହୁଏ ଓ ସେଗୁଡ଼ିକ ଅଲଗା ଅଲଗା ଭାବେ ଏହିସବୁ ଅଂଶକୁ ନିୟନ୍ତ୍ରଣ କରନ୍ତି । ପିଟୁଇଟେରୀ ହରମୋନର ଅଗ୍ନ୍ୟାଶୟ ଗ୍ରନ୍ଥି ଉପରେ କୌଣସି ପ୍ରଭାବ ନାହିଁ ।

ଏହି ସାମନା ଅଂଶରୁ ଯେଉଁ ଶରୀର ଅଭିବୃଦ୍ଧି ହରମୋନ୍ କ୍ଷରିତ ହୁଏ, ତାହା ଶରୀରର କଙ୍କାଳ ଅଭିବୃଦ୍ଧିରେ ସାହାଯ୍ୟ କରେ । ମାଂସପେଶୀ ଅଭିବୃଦ୍ଧିକୁ ନିୟନ୍ତ୍ରଣ କରେ । ଏହା ମଧ୍ୟ ପୁଷ୍ଟିସାର ସଂଶ୍ଳେଷଣକୁ ତ୍ୱରାନ୍ୱିତ କରେ । ଶରୀରର ସ୍ନେହସାରକୁ ଜାରିତ କରିବାରେ ସାହାଯ୍ୟ କରେ । ଏହି ହରମୋନ ମଣିଷମାନଙ୍କୁ ଡେଙ୍ଗା କରାଏ ଓ ମୋଟା କରାଏ । ସ୍ତ୍ରୀଲୋକ ମାନଙ୍କ ସ୍ତନ୍ୟରେ ଦୁଗ୍ଧ ବୃଦ୍ଧି କରାଏ ।

## ପିଟୁଇଟେରୀ ଗ୍ରନ୍ଥିର ପଛଅଂଶରୁ କ୍ଷରିତ ହେଉଥିବା ହରମୋନ

ଏହା ମାତ୍ର ଦୁଇ ପ୍ରକାରର ଯଥା—ଭେସୋପ୍ରେସିନ୍ ଓ ଅକ୍ସିଟୋସିନ୍ । ପ୍ରଥମଟି ଅଧିକ ମୂତ୍ର ପ୍ରସ୍ତୁତିରେ ବାଧାଦିଏ ଓ ଦ୍ୱିତୀୟଟି ସ୍ତ୍ରୀଲୋକମାନଙ୍କ ସ୍ତନ୍ୟରୁ ଅଧିକ ଦୁଧ କ୍ଷରଣରେ ସାହାଯ୍ୟ କରେ ଓ ପ୍ରସବବେଳେ ଜରାୟୁର କୁଞ୍ଚନକୁ ଉତ୍ତେଜିତ କରି ପ୍ରସବ ବେଦନା ସୃଷ୍ଟି କରାଏ । ଏହି ହରମୋନ-ଗୁଡ଼ିକ ପେପଟାଇଡ୍ ଜାତୀୟ । ଏହି କ୍ଷରଣ ମାଂସପେଶୀ ଉପରେ ତଥା ବୃକ୍କକୋଷ ଉପରେ ମଧ୍ୟ କାର୍ଯ୍ୟକରେ ।

ଆଧୁନିକ ଗବେଷଣାରୁ ଜଣାପଡ଼ୁଛି, ଯେ ଏଡ୍ରିନାଲ ଗ୍ରନ୍ଥିରୁ ଆସୁଥିବା ଏଡ୍ରିନେଲିନ ଓ ମସ୍ତିଷ୍କରୁ ଆସୁଥିବା ସ୍ନାୟୁ ଉତ୍ତେଜକ ଦ୍ୱାରା ପିଚୁଇଟେରୀ ଉତ୍ତେଜିତ ହୁଏ । ଯେହେତୁ ଏହା ଶରୀରର ଅନ୍ୟଗ୍ରନ୍ଥିକୁ ନିୟନ୍ତ୍ରଣ କରେ, ତେଣୁ ତା'ର କାର୍ଯ୍ୟ-କାରିତା ଉପରେ ଶରୀରର ସମ୍ୟକ ଅଭିବୃଦ୍ଧି ଅନେକାଂଶରେ ନିର୍ଭର କରେ । ପିଚୁଇଟେରୀ ହରମୋନ ଠିକ୍ ଭାବରେ କ୍ଷରିତ ନ ହେଲେ ରୋଗୀମାନଙ୍କୁ ଖୁବ୍ ସହଜରେ ଥଣ୍ଡା ଧରେ । କ୍ଷୁଧା କମିଯାଏ, ମଣିଷ ସହଜରେ ରୋଗାକ୍ରାନ୍ତ ହୁଏ ।

ପିଲାମାନେ କୈଶୋର ଅବସ୍ଥାରେ ପହଞ୍ଚିବା ପୂର୍ବରୁ ଯଦି ପିଚୁଇଟେରୀ ଗ୍ରନ୍ଥିର କାର୍ଯ୍ୟକାରିତା ହ୍ରାସପାଏ, ତେବେ ପିଲାଟି ବାମନ ହୋଇଯାଏ ଓ ତାର ମାନସିକ ବିକାଶ ଠିକ୍ ଭାବରେ ହୁଏନି । ଶରୀରର ଯୌନାଙ୍ଗ ଠିକ୍ ଭାବରେ ବଢ଼ି ପାରେନି । ତେଣୁ ଅଧିକ ବର୍ଷ ହେଲେବି ତା' ଠାରେ ପୁରୁଷ ବା ନାରୀସୁଲଭ ଗୁଣ ପ୍ରକାଶ ପାଏନି । ଥାଇରଏଡ଼ ଗ୍ରନ୍ଥିର କ୍ଷରଣ କମ ହେଲେ ଏହିଭଳି ଅବସ୍ଥା ମଧ୍ୟ ଉପୁଜେ ।

ପିଚୁଇଟେରି ଗ୍ରନ୍ଥିରେ ଟିଉମର ହେଲେ ଏହି କ୍ଷରଣ କମ ହୁଏ । ଏହି କ୍ଷରଣର ପରିମାଣ ଠିକ ରଖିବା ପାଇଁ ବାହାରୁ ଥାଇରଏଡ୍ କ୍ଷରଣ, ଯୌନ କ୍ଷରଣ, ଆଡ୍ରିନାଲ କ୍ଷରଣ ଦେଲେ ଏହାର କୁପ୍ରଭାବ ଦୂର ହୋଇପାରେ । ପିଚୁଇଟେରୀ ହରମୋନ କୃତ୍ରିମ ଭାବରେ ମିଳୁ ନଥିବାରୁ ଉପରୋକ୍ତ ହରମୋନ ଦେଇ ଏହାର ଅସ୍ୱାଭାବିକ ଅବସ୍ଥାକୁ ଦୂର କରାଯାଇପାରେ ।

ପିଟୁଇଟେରୀ ଗ୍ରନ୍ଥିରୁ ଯେଉଁ ଶରୀର ବୃଦ୍ଧିକାରୀ ହରମୋନ ନିଃସୃତ ହୁଏ, ତାହା ଶରୀରର ଟିସୁ ଉପରେ କାର୍ଯ୍ୟକରି ଶରୀରର ଅଭିବୃଦ୍ଧି ଘଟାଏ । ଏହାର ଅଭାବରୁ ଲୋକେ ବାମନ ହୋଇଯାନ୍ତି । ବାମନ ହେଉଛନ୍ତି ସେହିମାନେ, ଯେଉଁ-ମାନଙ୍କର ଉଚ୍ଚତା ସମବୟସ୍କ ଲୋକଙ୍କ ଠାରୁ ଯଥେଷ୍ଟ କମ୍ । ଜଣେ ବୟସ୍କ ଲୋକର ଉଚ୍ଚତା ଯଦି ଚୃଶଫୁଟରୁ କମ୍ ହୁଏ ତେବେ ତାକୁ ବାମନ କୁହାଯାଏ । ଅବଶ୍ୟକୀୟ ଖାଦ୍ୟାଭାବରୁ ପିଲାମାନେ ଅନେକ ସମୟରେ ଭଲ ଭାବରେ ବଢ଼ି ପାରନ୍ତିନି । ହେଲେ ଖାଦ୍ୟାଭାବରୁ କେହି ବାମନ ହୁଅନ୍ତିନି । ହରମୋନ ଅଭାବରୁ ହିଁ ପିଲାଏ ବାମନ ହୋଇଥାନ୍ତି । କେତେକ ସ୍ଥାନରେ ବାମନ ହେବା ଏକ ପୁରୁଷାନୁକ୍ରମିକ ଘଟଣା । ବାମନର ପିଲା ବାମନ ହେବାର ଦେଖାଯାଏ । ସ୍ୱାମୀ ସ୍ତ୍ରୀ ଉଭୟେ ବାମନ ହୋଇଥିଲେ ପିଲା ବାମନ ହେବା ନିଶ୍ଚିତ ।

ପିଲାମାନେ ବାମନ ହୋଇ ନଯିବା ପାଇଁ କେତେକ ବ୍ୟବସ୍ଥା ଅଛି । ଯଦି ଆବଶ୍ୟକୀୟ ପ୍ରୋଟିନ ଓ ଜୀବସାର ଅଭାବରୁ ଶରୀରର ଅଭିବୃଦ୍ଧି ବାଧା ପାଉଥାଏ, ତେବେ ସେ ପିଲାମାନଙ୍କୁ ସେଭଳି ଖାଦ୍ୟପଦାର୍ଥ ଶୀଘ୍ର ଯୋଗାଇଦେବା ଉଚିତ । ଥାଇରଏଡ଼ ହରମୋନ ଅଭାବରୁ ଯଦି ଏହା ହୋଇଥାଏ, ତେବେ ଥାଇରକ୍‌ସିନ ଦେଲେ ଉପକାର ହୁଏ । ଅନେକ ପିଲାଙ୍କର ବୟସ ଅଧିକ ହେଲେହେଁ କୈଶୋର ଅବସ୍ଥା ଆସି ନଥାଏ । ସେତେବେଳେ ଯୌନ ହରମୋନ ଦେଲେ ଭଲକାମ ଦେଇଥାଏ ।

ଅନେକ ପିଲା ଅଛନ୍ତି, ଯେଉଁମାନେ ସମବୟସୀ ପିଲାଙ୍କଠାରୁ ଛୋଟ, ସେମାନେ କୈଶୋର ଅବସ୍ଥାକୁ ଆସିଥିଲେ ହେଁ ଅନ୍ୟ-ମାନଙ୍କ ଭଳି ଶୀଘ୍ର ଶୀଘ୍ର ବଢ଼ନ୍ତି ନାହିଁ । ସେମାନଙ୍କୁ ଏହି

ସମସ୍ତରେ ବାହାରୁ ହରମୋନ ଦେଲେ ସେହି ଅସୁବିଧା ଦୂର ହୁଏ । ପିଟୁଇଟେରି ହରମୋନ ତ କୃତ୍ରିମ ଭାବରେ ମିଳେନ । ତେଣୁ ତା' ଯାଗାରେ ଥାଇରଏଡ଼ ହରମୋନ, ଯୌନ ହରମୋନ ଆଦି ଦେଲେ ଆବଶ୍ୟକୀୟ ଅଭିବୃଦ୍ଧି ଘଟିଥାଏ ।

ଯଦି କିଶୋର ଅବସ୍ଥା ଆସିବା ପୂର୍ବରୁ ଅଧିକ ପରିମାଣରେ ପିଟୁଇଟେରି ହରମୋନ କ୍ଷରିତ ହୁଏ, ତେବେ ପିଲାଟି ଏତେ ଜୋରରେ ବଢ଼େ ଯେ ସେ ଖୁବ୍ ଡେଙ୍ଗା ହୋଇଯାଏ, ଏମିତିକି ଲୋକ ଆଠଫୁଟ ପର୍ଯ୍ୟନ୍ତ ଡେଙ୍ଗା ହେବାର ଦେଖାଯାଏ । ଏହି ଡେଙ୍ଗା ଲୋକ ପ୍ରଥମରୁ ଠିକ୍ ଥାଏ, ମୂଳରୁ ଯଥେଷ୍ଟ ବଳବାନ, ବୁଦ୍ଧିମାନ ହୋଇଥାଏ, କିନ୍ତୁ କିଛିଦିନ ପରେ ହରମୋନ କମିଯାଏ, ଫଳରେ ସେତେବେଳେ ଏହି ଡେଙ୍ଗା ଲୋକଟି ଦୁର୍ବଳ ଓ ଧୀର ହୋଇଯାଏ ।

ଏହି ପିଟୁଇଟେରି ହରମୋନ ଅଭାବରୁ ଏକ୍ରୋମେଗାଲି ନାମକ ଏକ ପ୍ରକାର ରୋଗ ହୁଏ । ସେମିତି ଲୋକଙ୍କର ଫୁସଫୁସ, ଯକୃତ ଓ ଅନ୍ୟଅଙ୍ଗ ବଡିଯାଏ । ମୁଣ୍ଡଟା ଅତ୍ୟଧିକ ବଢ଼ିଯାଏ । ଗୋଡ଼ ହାତ ଆଦି ଅଣାନୁପାତିକ ଭାବରେ ବଢ଼ିଯାଏ, ଫଳରେ ଅସୁନ୍ଦର ଦିଶେ । ମୁଣ୍ଡବ୍ୟଥା, ଅବସାଦ ଓ ମାଂସପେଶୀ ଯନ୍ତ୍ରଣା ଏଥିରେ ଏକ ସାଧାରଣ ଲକ୍ଷଣ । ମୁହଁର ତଳ ମାଡ଼ି ବଢ଼ିଯାଏ । ଏହି ସମସ୍ତରେ ଖୁବ୍ ଭୋକ ଲାଗେ, ଶରୀରର ଚମ ମସୃଣ ରହେ ନାହିଁ । ଆଖି ଉପର ହାଡ଼ ବାହାରି ପଡ଼େ । ଏହି ରୋଗରେ କେହି ମରନ୍ତିନ । ଏମାନେ ବରଂ ଅଧିକ ଦିନ ବଞ୍ଚନ୍ତି । ଆଗେ ଏହି ରୋଗରେ ପିଟୁଇଟେରି ଗ୍ରନ୍ଥିକୁ କାଟି ଦେଇ ଏହି ରୋଗରୁ

ରକ୍ଷା କରାଯାଉଥିଲା । ଏବେ ଶକ୍ତିଶାଳୀ ଏକ୍ସରେ ପକାଇ ରୋଗୀକୁ ଭଲ କରାଯାଇ ପାରୁଛି । ଏହି ରୋଗୀମାନଙ୍କ ଅଙ୍ଗ ପ୍ରତ୍ୟଙ୍ଗ ଆନୁପାତିକ ହାରରେ ବଢ଼ୁ ନଥିବାରୁ ଏମାନେ ଅବାଗିଆ ଓ ଅସୁନ୍ଦର ଦିଶନ୍ତି । ଦେହର ହାଡ଼ କେଉଁଠି ଖୁବ୍ ମୋଟା ହୋଇଯାଏ ତ ଆଉ କେଉଁଠି ସରୁ ହୋଇଯାଏ ।

କେତେବର୍ଷ ତଳେ ପ୍ରକାଶ ପାଇଥିଲା ଯେ ଯାପାନ ଦେଶରେ ଗୋଟିଏ ବାଇଶବର୍ଷର ଯୁବକ ହଠାତ୍ ଉଚ୍ଚତାରେ ବଢ଼ିବାକୁ ଲାଗିଲା । ଅଳ୍ପ କେଇଦିନ ଭିତରେ ସେ ଏତେ ବଢ଼ିଗଲା ଯେ ସାରା ଏସିଆ ମହାଦେଶରେ ତା ଭଳି ଉଚ୍ଚା ଲୋକ ମିଳିବା ଦୁର୍ଲ୍ଲଭ ହୋଇ ପଡ଼ିଲା । ଯୁବକଟି ବଢ଼ିବା ସଙ୍ଗେ ସଙ୍ଗେ ଦୁର୍ବଳ ଅନୁଭବ କଲା । ସେ ବସିଉଠି ପାରିଲାନି । ତାକୁ ଯଦି ଏହିଭଳି ଭାବରେ ବଢ଼ିବାକୁ ଦିଆଯାଏ, ତେବେ ସେ କାଳେ ଗୋଟିଏ ଅସୁରରେ ପରିଣତ ହୋଇଯିବ, ଏହା ଭାବି ତାର ଆତ୍ମୀୟ ସ୍ୱଜନମାନେ ତାକୁ ଯାପାନର ଏକ ଡାକ୍ତରଖାନାକୁ ନେଇଗଲେ । ଡାକ୍ତର ପରୀକ୍ଷା କରି ଦେଖିଲେ ଯେ ସେହି ଯୁବକଟିର ପିଚୁଇଟେରୀ ଗ୍ରନ୍ଥିରେ ଏକ ପ୍ରକାର ରୋଗ ହେତୁ ଏହି ଅବସ୍ଥା ଉପୁଜିଛି । ସେ ତହୁଁ ତାର ମୁଣ୍ଡରେ ଅପରେସନ୍ କରି ପିଚୁଇଟେରୀ ଗ୍ରନ୍ଥିକୁ ଠିକ୍ କରିଦେଲାରୁ ଯୁବକଟି ଆଉ ବଢ଼ିଲା ନାହିଁ । ସେତିକିରେ ତାର ଉଚ୍ଚତା ବୃଦ୍ଧି ବନ୍ଦ ରହିଲା ଓ ସେ ଭଲ ହୋଇଗଲା । ସେ ଯୁବକଟି ବର୍ତ୍ତମାନ ସାରା ଏସିଆ ମହାଦେଶରେ ସବୁଠାରୁ ଡେଙ୍ଗା ଲୋକ । ଶରୀର ଉପରେ ପିଚୁଇଟେରୀ ହରମୋନର ପ୍ରଭାବ କେତେ, ତାହା ଏଥିରୁ ସହଜରେ ଅନୁମେୟ ।

ପିଟୁଇଟେରୀ ଗ୍ରନ୍ଥିର ପଛପାଖରୁ ଯେଉଁ ହରମୋନ ବାହାରେ, ତାହା କ୍ଷୁଦ୍ରାନ୍ତର କାନ୍ଥରେ ଥିବା ମାଂସପେଶୀକୁ ସଙ୍କୁଚିତ କରେ । ଗର୍ଭାଶୟର ମାଂସପେଶୀକୁ ମଧ୍ୟ ସଙ୍କୁଚିତ କରେ । ଏହା ହେବା ଫଳରେ ରକ୍ତସ୍ରାବ ସହଜରେ ହୁଏ ନାହିଁ । ବୃକ୍କର କାର୍ଯ୍ୟକୁ ମଧ୍ୟ ଏହା ନିୟନ୍ତ୍ରିତ କରେ । ଏହାର ଅଭାବରେ ଡାଏବେଟିସ ଇନସ୍‌ପିଡ଼ସ ନାମକ ଏକ ରୋଗ ହୁଏ । ଏହି ରୋଗ ହେଲେ ଶରୀରରୁ ଅଧିକ ମୂତ୍ର ନିଷ୍କାସିତ ହୋଇଯାଏ । ଏହି ରୋଗରେ ମଧ୍ୟ ଖୁବ ଶୋଷ ହୁଏ ଓ ଚମ ଶୁଖିଲା ଦିଶେ । ଅବଶ୍ୟ ଏହି ରୋଗ ସେତେ ଅଧିକ ଦେଖାଯାଏନି । ପିଟ୍ରେସିନ୍ ନାମକ ଔଷଧ ଦେଲେ ଏହି ରୋଗ ଭଲ ହୋଇଯାଏ । ପିଟ୍ରେସିନ୍ ମଧ୍ୟ ଏକ ପ୍ରକାର ହରମୋନ ଅଟେ । ପିଟୁଇଟେରୀ ଗ୍ରନ୍ଥିକୁ ନିୟନ୍ତ୍ରଣ କରେ ମସ୍ତିଷ୍କର ଏକ ଅଂଶ ହାଇପୋଥେଲାମସ୍ । ଏଥିରୁ କେତେକ ତରଳ ବାହାରି ପିଟୁଇଟେରୀ ଗ୍ରନ୍ଥିକୁ ଉତ୍ତେଜିତ କରନ୍ତି ।



## ଦଶମ ଅଧ୍ୟାୟ

# ଥାଇରଏଡ଼ ଗ୍ରନ୍ଥି

ଥାଇରଏଡ଼ ଗ୍ରନ୍ଥିର କାର୍ଯ୍ୟକାରିତା ପିଚୁଇଟେରୀ ଗ୍ରନ୍ଥିରୁ ଆସୁଥିବା ଟି. ଏସ. ଏଇଚ ହରମୋନ ଦ୍ୱାରା ନିୟନ୍ତ୍ରିତ ହୁଏ । ପିଚୁଇଟେରୀ ହରମୋନ ନ ଆସିଲେ ଥାଇରଏଡ଼ ଠିକ୍ ଭାବରେ କାମ କରେନା, ବା ମୋଟେ କାମ କରେନା । ଏହି ଗ୍ରନ୍ଥିରୁ ଯେଉଁ କ୍ଷରଣ ବାହାରେ ତାହା ଥାଇରକସିନ ନାମରେ ପରିଚିତ । ଅବସ୍ଥା ଚକ୍ରରେ ଥାଇରଏଡ଼ ଗ୍ରନ୍ଥିରୁ ଅଧିକ ବା କମ୍ ହରମୋନ ନିଃସୃତ ହୋଇପାରେ । ଯଦି କମ କ୍ଷରଣ ନିଃସୃତ ହୁଏ, ତେବେ ଜୀବନ ଧୀର ଭାବରେ ଗତି କରେ । ମଣିଷ ମୋଟା ହୋଇଯାଏ । ମାନସିକ ଦୁର୍ବଳତା ଆସେ । ମଣିଷ ବୁଦ୍ଧି ଶୂନ୍ୟ ହୋଇଯାଏ । ଯଦି ପିଲାଦିନେ ଏହି ଅଭାବ ଦେଖାଦିଏ, ତେବେ କ୍ରେଟିନିଜିମ ନାମକ ଏକ ରୋଗ ହୁଏ ।

ପିଲା ଅବସ୍ଥାରେ ଥିବା ବେଳେ ଯଦି ଥାଇରଏଡ଼ କ୍ଷରଣ ଆଶାଜନକ ନ ହୁଏ, ତେବେ ପରବର୍ତ୍ତୀ ଜୀବନରେ ମାଇକ୍ସୋଡ଼ିମା ରୋଗ ହୁଏ । ମାଇକ୍ସୋଡ଼େମା ରୋଗ ହେଲେ ଆଖିପତା ଫୁଲି ତଳକୁ ଝୁଲି ପଡ଼େ । ଏ ରୋଗ ହେଲେ କୌଣସି କାମରେ ମନ ଲାଗେ ନାହିଁ, ମୁଣ୍ଡ ବାଳ ଶୁଖିଲା ଓ ଅମସୃଣ ହୋଇଯାଏ, ଜିଭ ଓ ତଣ୍ଟି ଫୁଲିଯାଏ । ଭଲଭାବରେ କଥା କହି ହୁଏନା । ସେଭଳି ଲୋକଙ୍କ କଥା ବୁଝି ହୁଏନା । ସେମାନେ ଚଡ଼ଚଡ଼ିଆ ହୋଇଯାନ୍ତି ।

ଏହି ରୋଗୀମାନଙ୍କୁ ସହଜରେ ଥଣ୍ଡା ଧରେ । ଥାଇରଏଡ଼୍ ଖରଣ ଦେଲେ ଏ ରୋଗ ଭଲ ହୋଇଯାଏ ।

ପିଲା ଅବସ୍ଥାରେ ଯଦି କୌଣସି କାରଣବଶତଃ ଯଥେଷ୍ଟ ଥାଇରକ୍ସିନ୍ ଥାଇରଏଡ଼୍ ଗ୍ରନ୍ଥିରୁ ନିଃସୃତ ହୁଏନି, ତେବେ କ୍ରେଟିନିଜମ୍ ନାମକ ରୋଗ ହୁଏ । ଏ ରୋଗ ହେଲେ ଶରୀରର ବୃଦ୍ଧି ଘଟେନି । ବୟସ ବୃଦ୍ଧି ହେଲେହେଁ ପିଲାଟି ସେହିଭଳି ରହିଯାଏ । ନା ତାର ଶରୀର ବୃଦ୍ଧି ଘଟେ, ନା ତାର ମାନସିକ ବିକାଶ ଘଟେ । କୋଡ଼ିଏ ବାଇଶ ବର୍ଷର ଲୋକକୁ ଦେଖିଲେ, ତାର ଆକାର ଗୋଟି ଛଅ ସାତବର୍ଷର ପିଲାଭଳି ଦିଶେ ଓ ବୃଦ୍ଧି ମଧ୍ୟ ସେହି ପିଲା ଭଳି ଦେଖାଯାଏ । ପିଟୁଇଟେରୀ ହରମୋନର ଅଭାବରୁ ଥାଇରଏଡ଼ ଗ୍ରନ୍ଥି କାର୍ଯ୍ୟଶୀଳ ନ ହୋଇ ପାରିବାରୁ ଏହି ଅବସ୍ଥା ଉପୁଜେ । ଏହି ରୋଗୀମାନଙ୍କର କଙ୍କାଳ, ମାଂସପେଶୀ, ଦାନ୍ତ, ବାଳ, ମସ୍ତିଷ୍କ ସବୁ ସେହି ପିଲା ଅବସ୍ଥାରେ ରହିଯାଏ । ଶରୀରର ବିଭିନ୍ନ ଅଙ୍ଗରେ ଥିବା ଅସ୍ଥି-ଗୁଡ଼ିକ ସମଭାବରେ ନ ବଢ଼ି ଯାଗେ ଯାଗେ ମୋଟା ସରୁ ହୋଇଯାଏ । ଅନେକ ସ୍ଥାନରେ ଅସ୍ଥିଗୁଡ଼ିକ ମୋଟାରେ ବଢ଼ିବାକୁ ଲାଗେ, କିନ୍ତୁ ଲମ୍ବରେ ବଢ଼େ ନାହିଁ । ମସ୍ତିଷ୍କ ଭଲ ଭାବରେ ବଢ଼ି ପାରେନି, ତେଣୁ ମାନସିକ ଶକ୍ତିର ସମ୍ୟକ ବିକାଶ ଘଟେନି । ଯେହି ଲୋକଟି ପିଲା ଅବସ୍ଥାରେ ରହିଯାଏ । ବୟସ ବୃଦ୍ଧି ସଙ୍ଗେ ସେଗୁଡ଼ିକର ଯଥାଯଥ ଅଭିବୃଦ୍ଧି ହୁଏନି । ମାନସିକ ବିକାଶ ହୋଇ ନ ଥିବାରୁ ସେ କୌଣସି କାର୍ଯ୍ୟରେ ମନଯୋଗ କରିପାରେନି । କୌଣସି ଜିନଷ ତାକୁ ଭଲ ଲାଗେନି ।

ଏହି ରୋଗ ହେବା ଜଣାପଡ଼ିଲା ମାତ୍ରେ ପିଲାଟିକୁ ଥାଇରଏଡ଼ ଖରଣ ଇଞ୍ଜେକସନ୍ ଦେଲେ ପିଲାଟି ଭଲ ଆଡ଼କୁ

ଗଣ୍ଡ କରେ । କଣ୍ଠୁବନ୍ଦ ଚିକିତ୍ସା ଫଳରେ ପିଲାଟିର ଶରୀର ବୃଦ୍ଧି ଆରମ୍ଭ ହୁଏ । ବେଳେ ବେଳେ ଚିକିତ୍ସା ଆରମ୍ଭ କଲେ ହେଁ ପିଲାଟିର ମସ୍ତିଷ୍କର ଅଭିବୃଦ୍ଧି ଭଲ ନ ହୋଇପାରେ । ସେହି ପିଲା ଚିଡ଼ଚିଡ଼ିଆ ପ୍ରକୃତି ହାସଲ କରେ ଓ ତାକୁ ସମ୍ଭାଳିବା କଷ୍ଟକର ହୋଇପଡ଼େ ।

ଥାଇରଏଡ଼ କ୍ଷରଣ ଯଦି କୌଣସି କାରଣବଶତଃ ଅଧିକ କ୍ଷରିତ ହୁଏ, ତେବେ ହାଇପର-ଥାଇରଏଡ଼ିଜମ୍ ରୋଗ ହୁଏ । ଏହି ରୋଗ ପ୍ରଥମେ ୧୮୩୦ ମସିହାରେ ଦେଖା ଦେଇଥିଲା । ତେବେ ଏହି ରୋଗର କାରଣ ଥାଇରଏଡ଼ କ୍ଷରଣର ଆଧିକ୍ୟ ବୋଲି ୧୮୯୦ ମସିହା ପର୍ଯ୍ୟନ୍ତ ଜଣାପଡ଼ି ନଥିଲା । ଏହି ରୋଗ ବେଶି ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କଠାରେ ଦେଖାଯାଏ । ଯେଉଁ ସ୍ଥାନରେ ଗଳଗଣ୍ଡ ରୋଗର ପ୍ରାଦୁର୍ଭାବ ବେଶି, ସେ ସ୍ଥାନରେ ପୁରୁଷମାନଙ୍କ ଅପେକ୍ଷା ଚାରିଗୁଣ ସ୍ତ୍ରୀ ଲୋକ ଏ ରୋଗରେ ପଡ଼ନ୍ତି । ଏହି ରୋଗ ହେଲେ ରାତିରେ ଭଲ ନିଦ ହୁଏନି, ରୋଗୀ ଉଦ୍‌ବେଳିତ ହୁଏ । ତା ଦେହରୁ ବହୁତ ଝାଳ ବହେ । ନାଡ଼ି ଜୋରରେ ଚାଲେ ।

ପିଚୁଇଟେରି ଗ୍ରନ୍ଥି ଯଦି ଅଧିକ କାର୍ଯ୍ୟକାରୀ ହୁଏ, ତେବେ ପିଚୁଇଟେରି ହରମୋନ ଅଧିକ ନିର୍ଗତ ହୁଏ ଓ ଏହା ଥାଇରଏଡ଼୍ ଗ୍ରନ୍ଥିକୁ ଅଧିକ ଉତ୍ତେଜିତ କରେ, ଫଳରେ ଅଧିକ ପରିମାଣରେ ଥାଇରଏଡ଼ କ୍ଷରଣ କ୍ଷରିତ ହୁଏ । ଏହିଭଳି ସ୍ଥିତି ଯଦି ଅଧିକ ଦିନ ଚାଲେ, ତେବେ ଆଖି ଓ ଆଖି ଡୋଳା ବାହାରକୁ ବାହାରି ଆସିଲା ପରି ଦିଶେ । ଥାଇରଏଡ଼ ଗ୍ରନ୍ଥି

ଫୁଲିଯାଇ 'ଗଳଗଣ୍ଡ ରୋଗ ଆରମ୍ଭ ହୁଏ । ଏହିଭଳି ଲୋକ ଅତ୍ୟଧିକ ଭୟାଳୁ, ଖଡ଼ଖଡ଼ିଆ ପ୍ରକୃତ ଦେଖାନ୍ତି । ସେମାନଙ୍କ ମୃତ ମଧ୍ୟ ବେଳେ ବେଳେ ଥରେ । ଏହାର ବହିତ ଚିକିତ୍ସା ହେଉଛି ଥାଇରଏଡ଼-ଗ୍ରନ୍ଥିର କିଛି ଅଂଶ 'ଅପରେସନ ଦ୍ୱାରା କାଟି ବାହାର କରିଦେବା । ଅନେକ ସ୍ଥାନରେ ଡେଜଙ୍କି୍ରୁ ଆୟୋଡ଼ିନ୍ ଦେଇ ଏହି ରୋଗର ଚିକିତ୍ସା କରାଯାଏ ଓ ଏହା ମଧ୍ୟ ଭଲ ଫଳ ହଏ । ଏହା ପୂର୍ବରୁ ରଞ୍ଜନରଶ୍ମି ଦ୍ୱାରା ଏହି ଚିକିତ୍ସା କରା ଯାଉଥିଲା ।

ଏହି ଗଳଗଣ୍ଡ ରୋଗ ପ୍ରଥମେ ଚୀନ ଦେଶରେ ଦେଖା ଦେଇଥିଲା ଆଜକୁ ପ୍ରାୟ ସାଢ଼େ ତିନିହଜାର ବର୍ଷ ତଳେ । ସେ ଯୁଗରେ ଲୋକେ ସମୁଦ୍ର ମାଛ, ସମୁଦ୍ର ଶୈବାଳ ଓ ସମୁଦ୍ର ଜାତ ପଦାର୍ଥ ଖାଉଥିଲେ ଓ ଅନେକାଂଶରେ ଭଲ ହୋଇ ଯାଉଥିଲେ । ଏହା ହେଉଛି ସାଧାରଣ ଗଳଗଣ୍ଡ ରୋଗ । ଖାଦ୍ୟରେ ଆୟୋଡ଼ିନର ଅଭାବ ହେଲେ ଏ ରୋଗ ହୁଏ । ସେଥିପାଇଁ ସମୁଦ୍ର ଜାତ ପଦାର୍ଥ ଯଥା—ସାମୁଦ୍ରିକ ମାଛ, ସମୁଦ୍ରରୁ ଜାତ ଲୁଣ ଖାଇଲେ ସେଥିରେ ଅଧିକ ଆୟୋଡ଼ିନ ଥିବାରୁ ଏରୋଗ ଦୂର ହୁଏ । ଖାଦ୍ୟରେ ଆୟୋଡ଼ିନ ଅଭାବ ହେଲେ ଥାଇରଏଡ଼ ଗ୍ରନ୍ଥି ଅଧିକ ପରିମାଣରେ ଥାଇରଏଡ଼ କ୍ଷରଣ କ୍ଷରିବାକୁ ଚେଷ୍ଟା କରେ, ଫଳରେ ଏହା ଫୁଲିଯାଏ । ଏହି ଫୁଲିବା ଥରେ ଆରମ୍ଭ ହେଲେ ଏହା ଫୁଲିଫୁଲି ପୂରା ଗଳାକୁ ମାଡ଼ିଯାଏ । ବେକ ପାଖରେ ଏକ ବିରାଟ ଆବୁ ହେଲା ଭଳି ଜଣାପଡ଼େ । ବେଳେ ବେଳେ ଏହା ଏତେ ବଡ଼ ହୋଇଯାଏ ଯେ ନିଶ୍ୱାସପ୍ରଶ୍ୱାସ ନେବାରେ କଷ୍ଟ ହୁଏ । ପିଲାଦିନେ ଖାଦ୍ୟରେ ଆୟୋଡ଼ିନ ଲବଣ ଯଥେଷ୍ଟ ଖାଉଥିଲେ ଏ ରୋଗ ହୁଏନା । ଏହି ଗଳଗଣ୍ଡ ରୋଗ ଅତି

ଅସୁନ୍ଦର ଦିଶୁଥିବାରୁ ଏହାକୁ ଅପ୍ରୋପରସ୍ଥର ଦ୍ୱାରା ଭଲ କରାଯାଇପାରେ ।

ମଣିଷମାନଙ୍କ ବ୍ୟତୀତ ଜୀବମାନଙ୍କ ଦେହରେ ଯଦି ଥାଇରକ୍‌ସିନ୍‌ର ଅଭାବ ଘଟେ, ତେବେ ଉପରୋକ୍ତ ଭଳି ଫଳ ମିଳେ । ପରୀକ୍ଷା କରି ଦେଖାଯାଇଛି ଯେ ଗୋଟିଏ ବେଙ୍ଗ ପଦ୍ମଣା ଦେହରୁ ଯଦି ଥାଇରଏଡ଼୍ ଗ୍ରନ୍ଥି ବାହାର କରି ନିଆଯାଏ, ତେବେ, ସେହି ବେଙ୍ଗ ପଦ୍ମଣାଟି ବେଙ୍ଗରେ ପରିଣତ ହୋଇପାରେନା । ଗୋଟିଏ ବେଙ୍ଗ ପଦ୍ମଣାକୁ ଯଦି ଥାଇରଏଡ଼ କ୍ଷରଣ ଭିତରେ ରଖାଯାଏ, ତେବେ ସେ ଅଳ୍ପ ସମୟ ମଧ୍ୟରେ ଗୋଟିଏ ସୁସ୍ଥ ବେଙ୍ଗରେ ପରିଣତ ହୁଏ ।

କୌଣସି ମୋଟା ଲୋକ ଦେହରେ ଯଦି ଥାଇରଏଡ଼ କ୍ଷରଣ ଇଞ୍ଜେକ୍‌ସନ ଦିଆଯାଏ ତେବେ ଶରୀରର ବିପାକୀୟ ଦ୍ରୁତତା ବଢ଼ିବା ହେତୁ ତାର ଶରୀରରେ ଗଚ୍ଛିତ ଚର୍ବି ଅଂଶଗୁଡ଼ିକ କମିଯାଏ ଫଳରେ ଲୋକଟି ପାତଳା ହୋଇଯାଏ । ମୋଟା ଲୋକ ପାତଳା ହେବା ପାଇଁ ଏହା ଏକ ଉପାୟ ।

## ପାରାଥାଇରଏଡ଼ ଗ୍ରନ୍ଥି

ଥାଇରଏଡ଼ ଗ୍ରନ୍ଥିକୁ ଲାଗି ଏହାର ପଛରେ ପାରାଥାଇରଏଡ଼ ଗ୍ରନ୍ଥି ଥାଏ । ଏହାର ଲମ୍ବ ଇଞ୍ଚକର ଚାରି ଭାଗରୁ ଭାଗେ । ଏହାର କ୍ଷରଣର କାମ ହେଲା ଶରୀରରେ କେଲସିୟମ ଓ ଫସଫରସ କଭଳି ଭାବରେ କାର୍ଯ୍ୟ କରେ, ତାହା ତଦାରଖ କରିବା । ଏହି କ୍ଷରଣକୁ କୁହାଯାଏ ପାରାଥରମୋନ୍ । ଏହା କେଲସିୟମ ଓ ଫସଫରସର ପରିମାଣକୁ ଠିକ୍ ରଖେ । ଯଦି

ରକ୍ତରେ କେଲସିୟମର ପରିମାଣ କମିଯାଏ, ତେବେ ଏହି ଗ୍ରନ୍ଥିର ସକ୍ରିୟତା ବୃଦ୍ଧିପାଏ ଓ ବଢ଼ିଗଲେ ସକ୍ରିୟତା କମିଯାଏ । ଏହାର ଅଭାବରେ ଦେହ ଥରେ । ପାରାଥାଇରଏଡ଼ ଗ୍ରନ୍ଥି ଉପରେ ଟିଉମର ହେଲେ ଗ୍ରନ୍ଥିରୁ କ୍ଷରଣ ବୃଦ୍ଧିପାଏ । ଏହି କ୍ଷରଣ ଯଦି ବୃଦ୍ଧିପାଏ ତେବେ ଶରୀରର ହାଡ଼ର ଆକାରରେ ପରିବର୍ତ୍ତନ ଦେଖାଦିଏ, ହାଡ଼ ବଙ୍କେ, କ୍ଷୁଧା କମିଯାଏ । ରକ୍ତ ବହଳିଆ ହୋଇଯାଏ, ସହଜରେ ମୂର୍ଚ୍ଛା ବାନ୍ଧିଯାଏ । ବୃକ୍କରେ ପଥର ଜମିଯାଏ । ଅସ୍ତ୍ରୋପଚାର ଦ୍ୱାରା ପାରାଥାଇରଏଡ଼ ଗ୍ରନ୍ଥିରେ ଜନ୍ମିଥିବା ଟ୍ୟୁମରକୁ ବାହାର କରିଦେଲେ, ଆଉ ଅଧିକ କ୍ଷରଣ ହୁଏନି, ରୋଗୀ ଭଲ ହୋଇଯାଏ ।



## ଏକାଦଶ ଅଧ୍ୟାୟ

## ଆଡ୍ରିନାଲ ଗ୍ରନ୍ଥି

ଆମ ଶରୀରର ବୃକ୍କ ବା ଗୁର୍ଦାର ଉପରେ ଏହି ଗ୍ରନ୍ଥିଟି ଅବସ୍ଥିତ । ଏହି ଗ୍ରନ୍ଥି ଦୁଇ ଭାଗରେ ବିଭକ୍ତ, ଗୋଟିଏ ହେଉଛି ଅନ୍ତର୍ଭାଗ ଓ ଦ୍ୱିତୀୟଟି ବହିର୍ଭାଗ । ପ୍ରଥମଟିକୁ ଇଂରାଜୀରେ ମେଡୁଲା ଓ ଦ୍ୱିତୀୟଟିକୁ କରଟେକ୍ସ କୁହାଯାଏ । ଏହି ଦୁଇ ଭାଗରୁ ଦୁଇ ପ୍ରକାର ହରମୋନ୍ କ୍ଷରିତ ହୁଏ ।

ଆଡ୍ରିନାଲ ଗ୍ରନ୍ଥିର ଅନ୍ତର୍ଭାଗ ବା ମେଡୁଲାରୁ ଯେଉଁ କ୍ଷରଣ ନିଃସୃତ ହୁଏ, ତାହାକୁ ଆଡ୍ରିନେଲିନ କୁହାଯାଏ । ଏହାର ମଧ୍ୟ ଅନ୍ୟନାମ ଅଛି, ଯଥା—ଏପିନେଫ୍ରିନ ବ ସୁପ୍ରାରେନନ୍ । ଆଡ୍ରିନାଲ ଗ୍ରନ୍ଥିର ଅନ୍ତର୍ଭାଗ ସ୍ନାୟୁତନ୍ତ୍ର ସହିତ ସଂଯୁକ୍ତ । ଆମେ ହଠାତ୍ ଭୟ ପାଇଗଲେ ଏହି ଗ୍ରନ୍ଥିରୁ ଏଡ୍ରିନେଲିନ କ୍ଷରିତ ହୋଇ ଆମ ରକ୍ତରେ ମିଶେ । ଏହା ଆମକୁ ଭର୍ତ୍ତିନ ପଡ଼ ଦମ୍ଭ ଧରିବାରେ ସାହାଯ୍ୟ କରେ । ହଠାତ୍ କୌଣସି ବିପଦ ପଡ଼ିଲେ, ବା ଭୟ ପାଇଗଲେ ଆମକୁ ସାହସ ସଞ୍ଚୟ କରିବାରେ ଏହା ସାହାଯ୍ୟ କରେ । ଏହି କ୍ଷରଣ କମିଗଲେ ସେମିତି କିଛି ରୋଗ ହେବାର ଜଣାଯାଇନି । ତେବେ କୌଣସି କାରଣ ବଶତଃ ଅଧିକ କ୍ଷରିତ ହେଲେ ଓ ଏହି ଅଧିକ କ୍ଷରଣ କ୍ରମାଗତ ଲାଗି ରହିଲେ ରକ୍ତଚାପ ବଢ଼ିଯାଏ, ସ୍ନାୟୁତନ୍ତ୍ରରେ ଉତ୍ତେଜନା ଦେଖାଦିଏ । ଏହା ଫଳରେ ଅଧିକ ଝାଳ ବହେ, ମୁଣ୍ଡ ଘୂରିଏ ଓ କ୍ଲାନ୍ତି ଥରେ । ଏଡ୍ରିନେଲିନ ସହିତ ଆଉ ଏକ ହରମୋନ ନରଏଡ୍ରିନେଲିନ ମଧ୍ୟ କ୍ଷରିତ ହୁଏ ଓ ଏହା ଏଡ୍ରିନେଲିନର ବିପରୀତ କାର୍ଯ୍ୟ କରେ । ମୁଣ୍ଡର ମାଂସପେଶୀକୁ ଏହା ରକ୍ତଯୋଗାଣ କମ୍ କରେ ଚର୍ମକୁ ରକ୍ତଯୋଗାଣ ବଢ଼ାଏ । ଏହି କ୍ଷରଣ ହୃଦ୍‌ଯନ୍ତ୍ରକୁ ସ୍ନାୟୁତନ୍ତ୍ର ଓ ପିଟୁଇଟେରି ଗ୍ରନ୍ଥି ନିୟନ୍ତ୍ରଣ କରେ ।

ବହିର୍ଭାଗ ବା କରଟେକ୍‌ସରୁ ପ୍ରାୟ ୩୦ ପ୍ରକାରରୁ ଅଧିକ ହରମୋନ କ୍ଷରିତ ହୁଏ, ସେଥି ଭିତରୁ ୬ ଗୋଟି ଅଲଗା କରାଯାଇଛି । ଏହି ଛଅ ଗୋଟି ଭିତରୁ ଦୁଇଟି ଅତି ଜଣାଶୁଣା । ସେ ଦୁଇଟି ହେଲା କର୍ଟିସୋନ ଓ କର୍ଟୋନ । ପିଚୁଇଟେରୀ ଗ୍ରନ୍ଥିରୁ ଆସୁଥିବା ଏ.ସି.ଟି. ଏଇଚ କ୍ଷରଣ କରଟେକ୍‌ସକୁ ଉତ୍ତେଜିତ କଲେ, ଏହି କର୍ଟିସୋନ୍ ଓ କର୍ଟୋନ୍ କ୍ଷରିତ ହୁଏ । କର୍ଟିସୋନ ଆଜକାଲି ଏକ ଔଷଧ ଭାବରେ ବ୍ୟବହୃତ ହେଉଛି । ଆଣ୍ଠୁ ଚଣ୍ଟି ବାତରୋଗେ ଏହା ଖୁବ୍ ଫଳପ୍ରଦ ଔଷଧଭାବରେ କାମ କରେ । ଶ୍ୱାସ ରୋଗରେ, ହେ-ଜ୍ୱର( Hay fever) ଓ ସିରମ ରୋଗରେ ଏହା ମଧ୍ୟ ବ୍ୟବହୃତ ହୁଏ । ଯେଉଁସବୁ ରୋଗ ଆଲେର୍ଜି ଯୋଗୁଁ ହୁଏ, ସେହି ରୋଗ କର୍ଟିସୋନ ଦ୍ୱାରା ଭଲ ହୁଏ । ଏ·ସି·ଟି·ଏଇଚ ଓ କର୍ଟିସୋନ ସମାନ ନୁହନ୍ତି, ତେବେ ଉଭୟେ ଉପରୋକ୍ତ ରୋଗ ସମ୍ବନ୍ଧରେ ମିଳିତ ଭାବରେ ଦକ୍ଷତା ଦେଖାନ୍ତି । ଏ·ସି·ଟି·ଏଇଚ ଶରୀରକୁ ଗଲେ ଅଧିକ କର୍ଟିସୋନ ଆଡ୍ରେନେଲ୍ ଗ୍ରନ୍ଥିରୁ କ୍ଷରିତ ହୋଇ ରୋଗ ଉପଶମ ଢଙ୍ଗରେ ସାହାଯ୍ୟ କରେ । ଗୋରୁ ଗାଈଙ୍କ ଆଡ୍ରିନାଲ ଗ୍ରନ୍ଥିରୁ କର୍ଟିସୋନ ଆହରଣ କରାଯାଇ ମଣିଷ ରୋଗୀମାନଙ୍କୁ ଦିଆଯାଇ ସେମାନଙ୍କ ରୋଗ ଭଲ କରାଯାଇପାରୁଛି । କର୍ଟିସୋନ ଅପେକ୍ଷା ହାଇଡ୍ରୋ କର୍ଟିସୋନ ରୋଗ ଉପଶମ କରିବାରେ ଅଧିକ ଦକ୍ଷ । ଏହା ଅଧିକ ଶକ୍ତିଶାଳୀ ହୋଇଥିବାରୁ ଅଳ୍ପ ମାତ୍ରାରେ ଦିଆଯାଏ । ଏହି ଗ୍ରନ୍ଥିରୁ କ୍ଷରିତ ହରମୋନ ଶରୀରର ରକ୍ତରେ ଥିବା ସୋଡ଼ିୟମ, ପୋଟାସିୟମ, ଶର୍କରା, ଧାତୁସାର, ସ୍ନେହସାର ଆଦିର ପରିମାଣକୁ ନିୟନ୍ତ୍ରଣ କରେ । ଏହି ଗ୍ରନ୍ଥିରୁ ଜାତ କ୍ଷରଣରେ ଅନ୍ୟତମ ହରମୋନ ଏଲଡ୍ରୋଷ୍ଟେରନ ରକ୍ତସ୍ରୋତର ଧାତବ ଅଂଶକୁ ନିୟନ୍ତ୍ରଣ କରେ ।

## ଦ୍ୱାଦଶ ଅଧ୍ୟାୟ

## ଅଗ୍ନ୍ୟାଶୟ ଗ୍ରନ୍ଥି

ଏହି ଗ୍ରନ୍ଥିଟି ଆମ ଶରୀରର ଯକୃତ୍ ବା କଲିଜା ତଳେ ଅବସ୍ଥିତ । ଏହା ମଧ୍ୟ ପାକସ୍ଥଳୀକୁ ଖୁବ୍ ନିକଟ । ଏଥିରୁ ଅନେକ ଗୁଡ଼ିଏ କ୍ଷରଣ ବାହାରେ । ଏଥିରୁ କେତେକ କ୍ଷୁଦ୍ରାନ୍ତ୍ରର ଖାଦ୍ୟ ପରିପାକ କ୍ରିୟାରେ ଭାଗ ନିଅନ୍ତି । ଏହି ଗ୍ରନ୍ଥିରୁ ଗୋଟିଏ କ୍ଷରଣ ବାହାରେ, ଯାହା ସିଧାସଳଖ ରକ୍ତରେ ମିଶି ଶରୀରର ଶ୍ୱେତସାର ଜାରଣରେ ଭାଗ ନିଏ । ଏହି କ୍ଷରଣଟି ଇନସୁଲିନ ଭାବରେ ପରିଚିତ ଓ ଏହା ଏକ ବିଶିଷ୍ଟ ହରମୋନ ଭାବରେ ଖ୍ୟାତ । ଏହି କ୍ଷରଣ ଯଦି ଆବଶ୍ୟକ ଅନୁସାରେ କ୍ଷରିତ ନହୁଏ, ତେବେ ମଧୁମେହ ରୋଗ ହେବାର ଦେଖାଯାଏ । ଏହି ରୋଗ ହଜାର ହଜାର ବର୍ଷ ହେଲା ଜଣାଅଛି । କିନ୍ତୁ ତେରଦିନ ପର୍ଯ୍ୟନ୍ତ ଇନସୁଲିନ ଅଭାବ, ଏ ରୋଗର କାରଣ ବୋଲି ଜଣା ନଥିଲା । ଅଗ୍ନ୍ୟାଶୟ ଗ୍ରନ୍ଥି ଠିକ୍ ଭାବରେ କାମ ନକଲେ ମଧୁମେହ ରୋଗ ହୁଏ, ଏ କଥା ସର୍ବପ୍ରଥମେ ୧୮୮୯ ମସିହାରେ ଜଣା ପଡ଼ିଲା । ୧୯୨୧ ମସିହାରେ ବୈଜ୍ଞାନିକ ବେଣ୍ଟିଙ୍ଗ ଓ ବେଷ୍ଟ ଅଗ୍ନ୍ୟାଶୟ ଗ୍ରନ୍ଥିରୁ ଏକ ପ୍ରକାର କ୍ଷରଣ ଅଲଗା କଲେ ଯାହାକି ମଧୁମେହ ରୋଗକୁ ଭଲ କରିପାରେ । ସେମାନେ ଏହାର ନାମ ଦେଲେ ଇନସୁଲିନ । ଆଜିକାଲି ଇନସୁଲିନ ଏକ ଔଷଧ ଭାବରେ ମଧୁମେହ ରୋଗରେ

ବ୍ୟବହୃତ ହେଉଛି । ଆଗ ଯୁଗରେ ମଧୁମେହ ରୋଗ ହେଲେ ଲୋକମାନେ ଅଧିକ ଦିନ ବଞ୍ଚୁ ନଥିଲେ । ରୋଗ ଆରମ୍ଭ ହେବାର କେତେଦିନ ଭିତରେ ରୋଗୀ ମରି ଯାଉଥିଲା । ବେଣ୍ଟିଙ୍ଗ ଓ ବେଷ୍ଟ ଇନ୍‌ସୁଲିନ୍ ଆବିଷ୍କାର କଲାପରେ ଏ ରୋଗରେ ଆଉ ବେଶି ଲୋକ ମରୁ ନାହାନ୍ତି । ଆଜିକାଲି ମଧୁମେହ ରୋଗକୁ ସେତେ ବେଶି ଭୟ କରିବାର ନାହିଁ । ଇନ୍‌ସୁଲିନ୍ କୃତ୍ରିମ ଉପାୟରେ ପ୍ରସ୍ତୁତ ହୋଇ ବଜାରରେ ମିଳୁଥିବାରୁ ମଧୁମେହ ରୋଗକୁ ଆୟତ୍ତ କରାଯାଇ ପାରୁଛି । ଇନ୍‌ସୁଲିନର ଆବିଷ୍କାର ପାଇଁ ବୈଜ୍ଞାନିକ ବେଣ୍ଟିଙ୍ଗ ଓ ମେକଲିଆଡ଼ଙ୍କୁ ୧୯୨୩ ମସିହାରେ ଚିକିତ୍ସା ବିଜ୍ଞାନ ପାଇଁ ନୋବେଲ ପୁରସ୍କାର ମିଳିଥିଲା ।

ଇନ୍‌ସୁଲିନର ଅଭାବରୁ ସିନା ମଧୁମେହ ରୋଗ ହୁଏ, ଯଦି କୌଣସି କାରଣରୁ ଅଧିକ ଇନସୁଲିନ ନିଃସୃତ ହୁଏ, ତେବେ ରକ୍ତରୁ ଶର୍କରା ପରିମାଣ କମିଯାଏ । ଏହା ଫଳରେ ରୋଗୀ ଦୁର୍ବଳ ହୋଇଯାଏ । ବେଳେ ବେଳେ ରୋଗୀ ମଧ୍ୟ ସଂଜ୍ଞାହୀନ ହୋଇପଡ଼େ ଓ ଝାଳ ଝରେ । ସେତିକିବେଳେ ରୋଗୀକୁ ମିଠାଇ ବା ମିଠା ଆଦି ଖାଇବାକୁ ଦେଲେ ସେ ଅବସ୍ଥା ଦୂର ହୁଏ । ରକ୍ତରେ ଶର୍କରାର ଭାଗ ଯେତିକି ରହିବା କଥା, ତା'ଠାରୁ କମ୍ ରହିବା ଉଚିତ ନୁହେଁ । ଅଧିକ ରହିଲେ ରୋଗ, କମ୍ ରହିଲେ ବି ରୋଗ ।

## ଥାଇମସ ଗ୍ରନ୍ଥି

ଛାତି ହାଡ଼ର ଉପର ଅଂଶର ପଛପଟେ ଏହି ଗ୍ରନ୍ଥିଟି ଅବସ୍ଥିତ । ଏହା ଶିଶୁ ଅବସ୍ଥାରେ ବୃଦ୍ଧି ପାଏ ଓ ଏହି ଶିଶୁ ଅବସ୍ଥାରେ ହିଁ ପୂର୍ଣ୍ଣତା ପ୍ରାପ୍ତ ହୁଏ । ଏହାପରେ ଏହା ଧୀରେ

ଧୀରେ ସଙ୍କୁଚିତ ହୁଏ । ଏହାର କାର୍ଯ୍ୟକାରିତା ଭଲ ଭାବେ ଜଣାଯାଇନି । ତେବେ ଶରୀରରେ ରୋଗ ପ୍ରତିରୋଧୀ ଏଣ୍ଟିବଡ଼ି ତିଆରି ପାଇଁ ଏହା ଦାୟୀ ବୋଲି ଅନେକେ କହନ୍ତି ।

## ପିନିଏଲ ଗ୍ରନ୍ଥି

ଏକ ଛୋଟ ଶଙ୍କୁ ଆକାରର ଏହି ଗ୍ରନ୍ଥିଟି ମସ୍ତିଷ୍କର ତଳ ଅଂଶରେ ଅବସ୍ଥିତ । ଏହାର ପ୍ରକୃତ କାର୍ଯ୍ୟ କଣ ଏବେ ବି ଜଣା ଯାଇନି ।



## ତ୍ରୟୋଦଶ ଅଧ୍ୟାୟ

# ଯୌନ ଗ୍ରନ୍ଥି କ୍ଷରଣ

ପୁରୁଷମାନଙ୍କର ଅଣ୍ଡକୋଷ ଓ ସ୍ତ୍ରୀ ଲୋକମାନଙ୍କର ଗର୍ଭକୋଷ ଯୌନଗ୍ରନ୍ଥି ଭାବରେ ପରିଚିତ । ପିଚୁଇଟେରି ଗ୍ରନ୍ଥିରୁ ନିଃସୃତ ହେଉଥିବା ଗନାଡୋଟ୍ରୋପିନ୍ ମଣିଷର ଯୌନଗ୍ରନ୍ଥିର ଉତ୍ତେଜନା ତଥା ବିକାଶ ଦିଗରେ କାର୍ଯ୍ୟକରେ । ଯୌନଗ୍ରନ୍ଥିର ଯଥାଯଥ ବିକାଶ ଘଟିଲେ, ସେଥିରୁ ଯୌନଗ୍ରନ୍ଥି କ୍ଷରଣ ବାହାରେ । ପୁରୁଷମାନଙ୍କ ଅଣ୍ଡକୋଷରୁ ପୁଂ ଯୌନ କ୍ଷରଣ ଓ ସ୍ତ୍ରୀ ଲୋକମାନଙ୍କ ଗର୍ଭକୋଷ ଓ କରପସଲ୍ୟୁଟିୟମରୁ ସ୍ତ୍ରୀ ଯୌନ କ୍ଷରଣ ନିଃସୃତ ହୁଏ । ଏଗୁଡ଼ିକ ମଧ୍ୟ ଯଥାକ୍ରମେ ପୁଂ ଯୌନ ହରମୋନ ଓ ସ୍ତ୍ରୀ ଯୌନ ହରମୋନ ଭାବରେ ପରିଚିତ । ପିଚୁଇଟେରିରୁ ଯଦି ଗନାଡ଼ୋଟ୍ରୋପିକ ହରମୋନ କ୍ଷରିତ ନ ହୁଏ, ତେବେ ସ୍ତ୍ରୀ ଓ ପୁରୁଷଙ୍କର ଯୌନ ବିକାଶ ସଂଘଟିତ ହୁଏନି । ଫଳରେ ବୟସ ହୋଇଥିଲେ ହେଁ ସେମାନେ ଅପ୍ରାପ୍ତ ବୟସ୍କ ହୋଇ ପିଲା ଭଳି ରହିଯାଆନ୍ତି ।

ପୁଂ ଯୌନ ହରମୋନରେ ଦୁଇଟି ରାସାୟନିକ ପଦାର୍ଥ ଅନ୍ତର୍ଗତ । ସେ ଦୁଇଟି ହେଲା ଏଣ୍ଡ୍ରୋଷ୍ଟେରନ୍ ଓ ଟେଷ୍ଟୋଷ୍ଟେରନ । ସ୍ତ୍ରୀ ଯୌନ ହରମୋନରେ ମଧ୍ୟ ସେହିଭଳି ଦୁଇଟି ରାସାୟନିକ ପଦାର୍ଥ ଥାଏ । ସେ ଦୁଇଟି ହେଲା ଏଷ୍ଟ୍ରୋନ ଓ ପ୍ରଜେଷ୍ଟେରନ । ପ୍ରଥମଟି ଗର୍ଭକୋଷରୁ କ୍ଷରିତ ହୁଏ ଓ

ବିଶିଷ୍ଟ କୋଷ ଲ୍ୟୁଟିନିଷ୍ଟ ନିର୍ଗତ ହୁଏ । ଅଣ୍ଡକୋଷରୁ ପୁଂ ଯୌନ ହରମୋନ ଟେଷ୍ଟୋଷ୍ଟେରନ କ୍ଷରିତ ହୁଏ । ଏହା ଆମ ରକ୍ତକୁ ଯାଇ ଯକୃତରେ ପହଞ୍ଚିଲେ, ସେଠାରେ ଏଣ୍ଡ୍ରୋଷ୍ଟେରନରେ ପରିଣତ ହୁଏ । ଏହା ସେଠାରୁ ସିଧା ପରିସ୍ରାରେ ବାହାରିଯାଏ । କୈଶୋରାବସ୍ଥାରେ ଏହି ଏଣ୍ଡ୍ରୋଜେନର ଅଭାବ ଘଟିଲେ ପୁରୁଷଙ୍କର ହାତଗୋଡ଼ ଅସ୍ୱାଭାବିକ ଭାବରେ ଲମ୍ବ ହୋଇଯାଏ ।

## ପୁଂ ଯୌନ ହରମୋନ

ପୁଂ ଯୌନଗ୍ରନ୍ଥି କ୍ଷରଣ କ୍ଷରିତ ହେଲେ ପୁରୁଷମାନଙ୍କର ପୁରୁଷ ଲକ୍ଷଣ ଦେଖାଦିଏ । ଏହା ସାଧାରଣତଃ ଯୌବନାବସ୍ଥା ପ୍ରାରମ୍ଭରୁ ବା ଠିକ୍ ପୂର୍ବରୁ କ୍ଷରିତ ହୁଏ । ଏହା କ୍ଷରିତ ହେଲେ ମଣିଷର ସ୍ୱର ବଦଳିଯାଏ । ଏଥିପୂର୍ବରୁ କିଶୋର ଅବସ୍ଥା ଥାଏ । କିଶୋର ଅବସ୍ଥାରେ ସ୍ୱର ପିଲାଳିଆ ନରମ ଥାଏ । ପୁଂ ଯୌନ ହରମୋନ କ୍ଷରିତ ହେଲାକ୍ଷଣି ସ୍ୱର ପୁରୁଷ ସ୍ୱର ଭଳି କର୍କଶ ହୋଇଯାଏ । ମୁହଁରେ ନିଶ, ଦାଢ଼ି ଉଠେ, ଗୁପ୍ତରେ ଓ ଅଣ୍ଡକୋଷ ନିକଟରେ ବାଳ ଉଠେ । ସ୍ତ୍ରୀମାନଙ୍କ ପ୍ରତି ଆକର୍ଷଣ ଆସେ । ଝିଅମାନଙ୍କ ପ୍ରତି ଆକୃଷ୍ଟ ହେବା ବା ଝିଅମାନଙ୍କୁ ଭଲ ପାଇବା ଏହି ହରମୋନର ଏକ ବିଶିଷ୍ଟ ପ୍ରଭାବ । ଏହି ହରମୋନ ଯୋଗୁ ଯୌନାଙ୍ଗର ଯଥାଯଥ ଅଭିବୃଦ୍ଧି ଘଟେ । ଶରୀରର ମାଂସପେଶୀ ବୃଦ୍ଧିପ୍ରାପ୍ତ ହୋଇ ଶରୀର ବଳିଷ୍ଠ ଦିଶେ । ଟେଷ୍ଟୋଷ୍ଟେରନ ଏତେ ବଳିଷ୍ଠ ଯେ ଏହାର କ୍ଷରଣରେ ସାମାନ୍ୟ ବ୍ୟତିକ୍ରମ ହେଲେ ପୁରୁଷଭର ବିକାଶରେ ବିରାଟ ପରିବର୍ତ୍ତନ ଆସେ । ଜଣେ ଅତି ଭୟାଳୁ ଲୋକ ଏହି ହରମୋନ ପ୍ରଭାବରେ ଏକ ସାହସୀ ଦକ୍ଷ ନେତା ହୋଇଯାଇ ପାରେ ।

ପିଚୁଇଟେରୀରୁ ଗନାଡ଼ୋଟ୍ରୋପିକ ହରମୋନର କ୍ଷରଣ ଯଦି କୌଣସି କାରଣରୁ ବଶତଃ କମ୍ ହୁଏ, ତେବେ ପୁଂ ଯୌନାଙ୍ଗ ଠିକ୍ ଭାବରେ ଉତ୍ତେଜିତ ହୁଏନି ଓ ଯୌନ ଇନ୍ଦ୍ରିୟର ଅଭିବୃଦ୍ଧି ନହେବା ଯୋଗୁଁ ପୁଂ ଯୌନ କ୍ଷରଣ ଆଶାଜନକ ଭାବରେ ହୁଏନି । ଏହା ଫଳରେ ପୁଂ ଯୌନାଙ୍ଗ ପୁରୁଷମାନଙ୍କ ଭଳି ନ ବଢ଼ି ପିଲାମାନଙ୍କ ଯୌନାଙ୍ଗ ଭଳି କ୍ଷୁଦ୍ର ଓ ଦୁର୍ବଳ ହୋଇରହିଯାଏ । ଯୌବନାବସ୍ଥା ଆସିଲା ବେଳକୁ ଯଦି ଏହି କ୍ଷରଣ ଠିକ୍ ରୂପେ କ୍ଷରିତ ନ ହୁଏ, ତେବେ ଯୌନାଙ୍ଗର ଅଭିବୃଦ୍ଧି ନ ହୋଇ ପୂର୍ବଭଳି ଛୋଟହୋଇ ରହିଯାଏ । ଏହି ଲୋକମାନେ ପୁଂରୁଷ ହୋଇ ମଧ୍ୟ ପୁରୁଷତ୍ୱ ଲାଭ କରି ପାରନ୍ତିନି, ସେମାନେ ନପୁଂସକ ହୋଇ ରହିଯାନ୍ତି । ନପୁଂସକମାନଙ୍କର ପୁରୁଷତ୍ୱ ନଥାଏ । ସେମାନେ ସାଧାରଣ ପୁରୁଷଙ୍କ ଭଳି ଯୌନ ଉପଭୋଗ କରି ପାରନ୍ତିନି କି ସେମାନଙ୍କର ସନ୍ତାନ ଉତ୍ପାଦିକା ଶକ୍ତି ନଥାଏ । ସେମାନଙ୍କର ଯୌନାଙ୍ଗ ଥିଲେହେଁ ତାହା ଅତି ଦୁର୍ବଳ ଓ କୌଣସି କାମରେ ଆସେ ନାହିଁ ।

ଯଦି ଯୌବନାବସ୍ଥା ଆସିଲା ବେଳକୁ ଯେତେ ପୁଂ ହରମୋନ କ୍ଷରିତ ହେବା କଥା, ସେତେ କ୍ଷରିତ ନ ହୁଏ ବା ଅପେକ୍ଷାକୃତ କମ କ୍ଷରିତ ହୁଏ, ତେବେ ପୁରୁଷମାନଙ୍କ ସ୍ୱର କର୍କଶ ହୁଏନି । ମୁହଁରେ ଆଶାନୁରୂପ ନିଶଦାଢ଼ି ଉଠେନି । ସେମାନଙ୍କ ଶରୀର ବଳିଷ୍ଠ ନହୋଇ ସ୍ତ୍ରୀମାନଙ୍କ ଭଳି ନରମ ହୁଏ । ସେମାନଙ୍କ ମାନସିକ ବିକାଶ ସ୍ତ୍ରୀମାନଙ୍କୁ ଅନୁକରଣ କରିବା ଦିଗରେ କାର୍ଯ୍ୟକରେ । ସେମାନେ ପୁରୁଷ ହୋଇ ମଧ୍ୟ ସ୍ତ୍ରୀମାନଙ୍କ ଭଳି କଥାବାର୍ତ୍ତା, ଯିବା ଆସିବା କରନ୍ତି । ସ୍ତ୍ରୀ ମେଳରେ ରହିବା ପାଇଁ ଓ ସ୍ତ୍ରୀ ପୋଷାକ ପିନ୍ଧିବା ପାଇଁ ସେମାନଙ୍କୁ ଭଲ ଲାଗେ । ସେମାନେ ଆମ ସମାଜରେ ମାଇଚିଆ ଭାବରେ ପରିଚିତ । ସେମାନଙ୍କର ଯୌନାଙ୍ଗ ଠିକ୍

ସ୍ୱଭାବରେ ବଢ଼ିଥାଏ । ପୁଂଯୌନଗ୍ରନ୍ଥି କ୍ଷରଣ ଅଳ୍ପ ହେଉଥିଲେ ହେଁ ସେମାନଙ୍କ ସନ୍ତାନ ଉତ୍ପାଦିକା ଶକ୍ତି ଥାଏ ଓ ସେମାନେ ଯୌନ ଉପଭୋଗ କରିପାରନ୍ତି । ମାଇକିଆମାନେ ଯଦି ବିବାହ କରନ୍ତି ତେବେ ସେମାନଙ୍କର ପିଲାଛୁଆ ହୁଏ । ସେମାନେ ନପୁଂସକ ଅପେକ୍ଷା ଭଲ ।

ପୁଂଯୌନଗ୍ରନ୍ଥି କ୍ଷରଣ ଯଦି ଅଧିକ ହୁଏ, ତେବେ କିଶୋର ଅବସ୍ଥାରୁ ସ୍ୱପ୍ନଦୋଷ ହୁଏ । ବଡ଼ କାଳକୁ ସେମାନେ ବ୍ୟଭିଚାରୀ ହୁଅନ୍ତି । ନାନାପ୍ରକାର ଯୌନ କୁକର୍ମରେ ଲିପ୍ତ ରହିବାକୁ ଭଲ ପାଆନ୍ତି । ରକ୍ତରେ ପୁଂଯୌନ ହରମୋନ ଟେଷ୍ଟୋଷ୍ଟେରନର ପରିମାଣ କୌଣସି କାରଣ ବଶତଃ ଅଧିକ ବଢ଼ିଗଲେ, ସେମାନେ ନାନା ପ୍ରକାର ଯୌନ କୁକର୍ମ କରିବାକୁ ପଛାନ୍ତି ନାହିଁ । ଯେଉଁ-ମାନେ ପ୍ରତିଦିନ ଅଣ୍ଡା, ମାଂସ,ମାଛ, ବିରିୟାନି ଆଦି କୋଲେଷ୍ଟେରଲ୍ ବହୁଳ ଧନୀଲୋକଙ୍କ ଖାଦ୍ୟ ଖାନ୍ତି, ସେମାନଙ୍କ ଠାରେ ଟେଷ୍ଟୋ-ଷ୍ଟେରନର କ୍ଷରଣ ଅଧିକ ହୁଏ, ଫଳରେ ସେମାନେ ନାରୀ ଧର୍ଷଣ କରିବାକୁ ସହଜରେ ଆଗେଇଯାନ୍ତି । ରକ୍ତରେ ଏହି ହରମୋନ ପରିମାଣ ନ ବଢ଼ିଲେ ମଣିଷ ବଳରେ ଶକ୍ତି ହରାଇ ନାରୀ ଧର୍ଷଣ କରେ ନାହିଁ । ଉପରୋକ୍ତ ଅଣ୍ଡା, ମାଂସ, ଆଦି ଉତ୍ତେଜକ ଖାଦ୍ୟ ଅର୍ଥ ଏହିସବୁ ଯୌନ ବ୍ୟଭିଚାର ପାଇଁ ଅଧିକ ଦାୟୀ । ସେଥିପାଇଁ ଆମ ପୂର୍ବପୁରୁଷମାନେ ସାତ୍ତ୍ୱିକ ଆହାର ପାଇଁ ଉପଦେଶ ଦେଉଥିଲେ । ସାତ୍ତ୍ୱିକ ଆହାର ଖାଇଲେ ଯୌନ ଅପରାଧ ସଂଖ୍ୟା କମିଯାଏ । ଯୌନ ଉତ୍ତେଜକ ଖାଦ୍ୟ ଖାଇଲେ ପୁଂଯୌନ ହରମୋନ ଟେଷ୍ଟୋଷ୍ଟେରନ ଅଧିକ ପରିମାଣରେ କ୍ଷରିତ ହୁଏ, ମାନସିକ ସ୍ତରରେ ମଣିଷର ଯୌନ ଲାଳସା

ବଢ଼ିଯାଏ ଓ ଲୋକେ ନାରୀଧର୍ଷଣ ପାଇଁ ପାଗଳ ହୋଇ ସାମାନ୍ୟ ସୁବିଧା ସୁଯୋଗ ପାଇଲେ କରିପକାନ୍ତି ।

## ସ୍ତ୍ରୀ ଯୌନ ହରମୋନ

ଏହି ହରମୋନ ପ୍ରଧାନତଃ ଗର୍ଭକୋଷ ଓ କରପସ ଲଉଟିୟୁମରୁ କ୍ଷରିତ ହୁଏ । ପିଚୁଇଟେରୀ ଗ୍ରନ୍ଥିରୁ ଗନାଡ୍ରୋଟ୍ରପିକ ହରମୋନ ନିର୍ଗତ ହେଲେ ଏହା ସ୍ତ୍ରୀ ଯୌନ କୋଷଠାକୁ ଆସି ଗର୍ଭକୋଷ ଆଦିକୁ ଉତ୍ତେଜିତ କରେ ଫଳରେ ଗର୍ଭକୋଷ ଆଦିରୁ ସ୍ତ୍ରୀ ଯୌନ ହରମୋନ ଏଷ୍ଟ୍ରୋନ ଓ ଏଷ୍ଟ୍ରେଡ଼ିଅଲ କ୍ଷରିତ ହୁଏ । ଏହା କ୍ଷରିତ ହେଲେ ସ୍ତ୍ରୀମାନଙ୍କର ସ୍ୱର ମଧୁର ହୋଇଯାଏ । ଶରୀର ବଳିଷ୍ଠ ନ ଦିଶି ନରମ ଦିଶେ । ସ୍ତନର ସ୍ତନ୍ୟ ସମ୍ୟକ ବୃଦ୍ଧିପ୍ରାପ୍ତ ହେବା ଫଳରେ ରୂପ ଆକର୍ଷଣୀୟ ଦେଖାଯାଏ । ମୁଖର କାନ୍ତି, ଆଭା ଓ ଲାବଣ୍ୟ ଫୁଟି ଉଠେ । ଏହି ସମୟରେ ସ୍ତ୍ରୀମାନଙ୍କର ପୁରୁଷମାନଙ୍କ ପ୍ରତି ଆକର୍ଷଣ ବଢ଼ିଯାଏ । ଜରାୟୁ ଆଶାଜନକ ଭାବରେ ବୃଦ୍ଧି ପାଏ, ମାସିକ ଋତୁସ୍ରାବ ଆରମ୍ଭ ହୁଏ । ଋତୁସ୍ରାବ ଆରମ୍ଭ ହେଲେ ଗର୍ଭକୋଷରୁ ପରିପକ୍ୱ ଡିମ୍ବାଣୁ ନିର୍ଗତ ହୁଏ । ଏହି ସମୟରେ ଜରାୟୁରେ କରପସଲ୍ୟୁଟିୟୁମ ସୃଷ୍ଟି ହୋଇ ପ୍ରୋଜେଷ୍ଟେରନ ନାମକ ଆଉ ଏକ ହରମୋନକୁ କ୍ଷରିତ କରାଏ ।

ଏହି କ୍ଷରଣ କ୍ଷରିତ ହେଲେ ସ୍ତ୍ରୀମାନଙ୍କର ସନ୍ତାନ ଉତ୍ପାଦିକା ଶକ୍ତି ବୃଦ୍ଧି ପାଏ । ସହବାସ ବେଳେ ଜରାୟୁରେ ଯେତେବେଳେ ଡିମ୍ବାଣୁ ଶୁକ୍ରାଣୁ ସହିତ ମିଳିତ ହୁଏ, ସେହି ମିଳିତାବସ୍ଥାକୁ ସ୍ଥାୟୀ କରି ସନ୍ତାନ ସୃଷ୍ଟି ଦିଗରେ ପ୍ରୋଜେଷ୍ଟେରନ ସାହାଯ୍ୟ କରେ । ପ୍ରୋଜେଷ୍ଟେରନ ଯୋଗୁଁ ଜରାୟୁ ଶିଶୁ ସୃଷ୍ଟି ପାଇଁ ପ୍ରସ୍ତୁତ ହୋଇଯାଏ । ଗର୍ଭକୋଷ, ଯେଉଁଠି ଡିମ୍ବାଣୁ ସୃଷ୍ଟି ହୁଏ ତାକୁ ସୁସ୍ଥ ଓ ଉତ୍ପାଦିକା ଅବସ୍ଥାରେ ରଖିବାରେ ଏଷ୍ଟ୍ରୋନ ଦାୟୀ ।

ଗର୍ଭକୋଷରୁ ଜାତ ହରମୋନ ଏଷ୍ଟ୍ରୋନ ଯଦି କମ୍ ପରିମାଣରେ କ୍ଷରିତ ହୁଏ, ତେବେ ସ୍ତ୍ରୀ ଯୌନାଙ୍ଗ ବୃଦ୍ଧିରେ ବାଧା ଉପୁଜେ । ସେମାନଙ୍କ ସ୍ତନ୍ୟ ଆଦି ଠିକ୍ ଭାବରେ ବଢ଼େନି, ମାସିକ ଋତୁସ୍ରାବ, ଜରାୟୁର ଅଭିବୃଦ୍ଧିରେ ନାନା ଗୋଳମାଳ ଉପୁଜେ ।

ଯଦି ପିଚୁଇଟେରୀ ହରମୋନ ଅଭାବରୁ ସ୍ତ୍ରୀ ଯୌନ ହରମୋନ କ୍ଷରିତ ନହୁଏ, ତେବେ ଛୋଟ ଝିଅପିଲାଙ୍କର ଅଭିବୃଦ୍ଧି ଘଟେନି । ଯଥେଷ୍ଟ ବୟସ ହୋଇଥିଲେ ମଧ୍ୟ ସେମାନେ ଛୋଟ ଝିଅ ଭଳି ରହିଯାନ୍ତି । ସେମାନଙ୍କ ସ୍ତନ୍ୟ ବିକାଶପ୍ରାପ୍ତ ହୁଏନି କି ସ୍ତ୍ରୀ ଯୌନାଙ୍ଗ ଜରାୟୁ ବଢ଼େନି କି ମାସିକ ଋତୁସ୍ରାବ ଆରମ୍ଭ ହୁଏନି । ସେମାନେ ସେହିଭଳି ଅପ୍ରାପ୍ତ ବୟସ୍କା ହୋଇ ରହିଯାନ୍ତି ।

ପୁରୁଷ ତଥା ସ୍ତ୍ରୀ ଉଭୟଙ୍କ ଯୌନାଙ୍ଗରୁ ଉଭୟ ପୁଂ ତଥା ସ୍ତ୍ରୀ ଯୌନ ହରମୋନ କ୍ଷରିତ ହୁଏ । ସ୍ତ୍ରୀମାନଙ୍କ ଠାରେ ପୁଂ ଯୌନ ହରମୋନ କମ୍ ଓ ସ୍ତ୍ରୀ ଯୌନ ହରମୋନ ବେଶି କ୍ଷରିତ ହୁଏ । ସେ କ୍ଷେତ୍ରରେ ସ୍ତ୍ରୀଟି ସାଧାରଣ ସ୍ତ୍ରୀ ଭାବରେ ସମସ୍ତ ସ୍ତ୍ରୀ ଗୁଣର ଅଧିକାରୀ ହୋଇଥାଏ । କୌଣସି କାରଣବଶତଃ ସ୍ତ୍ରୀ ଯୌନ ହରମୋନ ଯଦି କମ ଓ ପୁଂ ଯୌନ ହରମୋନ ଅଧିକ କ୍ଷରିତ ହୁଏ, ତେବେ ସେ ସ୍ତ୍ରୀ ଲୋକଟିର ସ୍ୱର ମଧୁର ହେବା ପରିବର୍ତ୍ତେ କର୍କଶ ହୁଏ । ମୁହଁରେ ନିଶ, ଦାଢ଼ି ଉଠେ । ତାର ଶରୀରର ମାଂସପେଶୀ ବଳିଷ୍ଠ ହିଶେ । ସ୍ତନ୍ୟର ଆକାର କମିଯାଏ, ମୁଖର ସ୍ତ୍ରୀ ସୁଲଭ ଭାବ କମି ଯାଏ । ସେମିତି ସ୍ତ୍ରୀ ପୁରୁଷମାନଙ୍କ ଭଳି ଗଛ ଚଢ଼ିପାରେ, କାଠ ହାଣି ପାରେ, ନଈ ପହଁରି ପାରେ ।

ସେମାନେ ସାଧାରଣ ସ୍ତ୍ରୀମାନଙ୍କ ଭଳି ଭୟାଳୁ ନ ହୋଇ ପୁରୁଷମାନଙ୍କ ଭଳି ସାହସୀ ହୋଇଥାନ୍ତି । ସେଭଳି ସ୍ତ୍ରୀମାନଙ୍କୁ ଆମେ ଅଣ୍ଡିରଚଣ୍ଡୀ କହୁଁ । ସେମାନଙ୍କର ଅନ୍ୟ ସ୍ତ୍ରୀଗୁଣ ସବୁ ଠିକ୍ ଥାଏ । ସେମାନେ ବିବାହ କଲେ ସନ୍ତାନ ପ୍ରସବ କରିପାରନ୍ତି । ବେଳେ ବେଳେ ସେମାନଙ୍କ ସ୍ତନ୍ୟ ଆଶା ଜନକ ଭାବରେ ବୃଦ୍ଧି ନପାଇ ଅଳ୍ପ ବୃଦ୍ଧି ପାଇଥିବାରୁ ନିଜ ସନ୍ତାନ ପାଇଁ ସେଥିରୁ ଆଶାଜନକ କ୍ଷୀର ନ ବାହାରି ପାରେ । ଏହିଭଳି ଅନେକ ପ୍ରକାର ବାହ୍ୟ ପୁରୁଷ ଗୁଣ ଥାଇ ମଧ୍ୟ ସେମାନେ ସ୍ତ୍ରୀ ।

## ହିରସୁଟିଜିମ୍

ସ୍ତ୍ରୀ ଲୋକମାନଙ୍କ ମୁହଁରେ ନିଶ ଦାଢ଼ି ଉଠିବା ଏକ ଅତି ଅପ୍ରୀତିକର ଘଟଣା । ଏହାକୁ ହିରସୁଟିଜମ କୁହାଯାଏ । ଏହି ରୋଗ ହେଲେ ସ୍ତ୍ରୀମାନଙ୍କ ଗାଲରେ ବାଳ ଉଠେ, ତଳ ପେଟରେ ବାଳ ଉଠେ, ଶରୀରରେ ଲୋମ ପରିମାଣ ବଢ଼ିଯାଏ । ପୁରୁଷମାନଙ୍କ ଭଳି ମୁହଁରେ ନିଶ, ଦାଢ଼ି ଉଠେ । ଏହା ଏକ ବଂଶଗତ ରୋଗ ବୋଲି ଧରାଯାଏ । ଆମ ଦେଶରେ ପାର୍ସି ଓ ସିନ୍ଧି ମହିଳାମାନଙ୍କଠାରେ ଏଭଳି ରୋଗ ଅଧିକ ଦେଖାଯାଏ । ସ୍ତ୍ରୀମାନଙ୍କ ଶରୀରରେ ପୁଂ ଯୌନ ହରମୋନ ଏଣ୍ଡ୍ରୋଜେନର କ୍ଷରଣ ଯୋଗୁଁ ଏହି ଅବସ୍ଥା ସୃଷ୍ଟି ହୋଇ ମହିଳାମାନଙ୍କଠାରେ ଏଭଳି ରୋଗ ଦେଖାଯାଏ । ସ୍ତ୍ରୀଲୋକମାନଙ୍କ ଶରୀରରେ ବେଳେବେଳେ ଏଣ୍ଡ୍ରୋଜେନ୍‌ର କ୍ଷରଣ ଆଡ୍ରିନାଲ ଗ୍ରନ୍ଥିରୁ ଆସେ । ଶରୀରରେ କୌଣସି କାରଣ ବଶତଃ ଏହି ଗ୍ରନ୍ଥି ଅଧିକ ସକ୍ରିୟ ହେଲେ ଏଣ୍ଡ୍ରୋଜେନ ସୃଷ୍ଟି କରେ । ଏହି କ୍ଷରଣ ଯୋଗୁଁ ସ୍ତ୍ରୀଲୋକମାନଙ୍କ ମୁହଁରେ ନିଶଦାଢ଼ି ଉଠିବାର ଦେଖାଯାଏ । ଏହି

ରୋଗରୁ ରକ୍ଷା ପାଇବା ପାଇଁ ନାନା ବ୍ୟବସ୍ଥା ଅଛି । ସେଥି ଭିତରୁ ଇଲେକ୍‌ଟ୍ରୋଲିସିସ ଏକ ବହୁତ ବ୍ୟବସ୍ଥା । ତା' ଛଡ଼ା ଏଣ୍ଡ୍ରୋଜେନର ପ୍ରଭାବ ହ୍ରାସ ପାଇଁ ଏକ ଔଷଧ ସେବନ ଏ ରୋଗକୁ ଦୂର କରିପାରେ । ଆଉ କେତେକ ସ୍ଥଳରେ ସ୍ତ୍ରୀ ଯୌନ ହରମୋନର ସେବନ ହିରସୁଟିଜମକୁ କମାଏ । ପୁରୁଷ ଯୌନ ହରମୋନ ଏଣ୍ଡ୍ରୋଜେନ ସ୍ତ୍ରୀମାନଙ୍କର ଏହି ଅବସ୍ଥା ପାଇଁ ଦାୟୀ । ସ୍ତ୍ରୀମାନଙ୍କର ଶରୀରରେ ସୃଷ୍ଟି ହେଉଥିବା ଏହି ଏଣ୍ଡ୍ରୋଜେନକୁ ପ୍ରୋଟିନ ସହିତ ବାନ୍ଧି ଦେଇ ପରେ ଏହାକୁ ଶରୀର ଭିତରେ ସ୍ତ୍ରୀ ଯୌନ ହରମୋନ ଏଷ୍ଟ୍ରୋନକୁ ପରିବର୍ତ୍ତିତ କରି ଦିଆଯାଇପାରେ । ତେବେ ଏହି ବ୍ୟବସ୍ଥାରେ କେତେକ ଅସୁବିଧା ଅଛି । ବେଳେ ବେଳେ ଏହି ରୋଗ ପାଇଁ କର୍ଟିସୋନ ବ୍ୟବହାର କରିବା ଦେଖାଯାଏ । ଗର୍ଭକୋଷରୁ ବା ଏଡ୍ରେନାଲ ଗ୍ରନ୍ଥିରୁ ବେଳେ ବେଳେ ଯେଉଁ ଏଣ୍ଡ୍ରୋଜେନ ସୃଷ୍ଟି ହୁଏ ଯାହାକି ଏ ରୋଗର ଏକ କାରଣ, କର୍ଟିସୋନ ବ୍ୟବହାର ଫଳରେ ଗର୍ଭକୋଷରୁ ବା ଏଡ୍ରେନାଲ ଗ୍ରନ୍ଥିରୁ ଏଣ୍ଡ୍ରୋଜେନ କ୍ଷରଣ ବାଧାପାଏ । ଏହି ଚିକିତ୍ସାରେ ଶତକଡ଼ା ୩୦-୫୦ ଭାଗ ରୋଗୀ ଭଲ ହୋଇଯାନ୍ତି ।



## ଚତୁର୍ଦ୍ଦଶ ଅଧ୍ୟାୟ

# ଲିଙ୍ଗ ପରିବର୍ତ୍ତନରେ ହରମୋନ୍‌ର ଭୂମିକା

ପୁରୁଷମାନେ ସ୍ତ୍ରୀ ଓ ସ୍ତ୍ରୀମାନେ ପୁରୁଷ ପାଲଟିବା ମଣିଷ ସମାଜରେ କିଛି ନୂଆ କଥା ନୁହେଁ । ଏହା ଏକ ସାଧାରଣ ଘଟଣା । ଆମେ ଅନେକ ସମୟରେ ଖବରକାଗଜରେ ପଢ଼ୁ, ଅମୁକେଇ ଡାକ୍ତର ଖାନାକୁ ଜଣେକ ସ୍ତ୍ରୀ ଆସିଥିଲେ ତାଙ୍କ ନାଁ ଥିଲା ରମାସୁନ୍ଦରୀ ଦେବୀ । ଡାକ୍ତରଖାନାରେ ତାଙ୍କର ଲିଙ୍ଗ ପରିବର୍ତ୍ତନ ହେବାରୁ ସେ ପୁରୁଷ ହୋଇ ରମାବଲ୍ଲଭ ନାଁ ନେଇ ଘରକୁ ଫେରିଲେ । ଆମେ ବେଳେ ବେଳେ ପଢ଼ୁ, ଜଣେ ପୁରୁଷ ଡାକ୍ତର ଖାନାକୁ ଆସିଥିଲା, ତାର ଲିଙ୍ଗ ପରିବର୍ତ୍ତନ ହେବାରୁ ସ୍ତ୍ରୀ ହୋଇ ଘରକୁ ଫେରିଲା । ତା ନାଁ ଶ୍ୟାମସୁନ୍ଦର ଯାଗାରେ ଶ୍ୟାମାମଣି ରଖାଗଲା । ଏହିଭଳି ଘଟଣା ସାରା ପୃଥିବୀରେ ପ୍ରାୟ ସବୁ ଦେଶରେ ଦେଖାଯାଏ । ପ୍ରତି ଦଶଲକ୍ଷ ସ୍ତ୍ରୀ-ପୁରୁଷଙ୍କ ଭିତରେ ଏହିଭଳି ଲିଙ୍ଗ ପରିବର୍ତ୍ତନ ହାରାହାରି ଗୋଟାଏ ହୋଇଥାଏ । ଏହି ଲିଙ୍ଗ ପରିବର୍ତ୍ତନ ସମ୍ବନ୍ଧୀୟ ଅସ୍ତ୍ରୋପଚାରରେ ପାଶ୍ଚାତ୍ୟ ଦେଶର କେତେ ଡାକ୍ତର ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ଥରେ ଆମେରିକାର ସେହିଭଳି ଏକ ପ୍ରସିଦ୍ଧ ଡାକ୍ତରଙ୍କ ପାଖରେ ଅନେକ ଗୁଡ଼ିଏ ଲୋକଙ୍କର ଦରଖାସ୍ତ ପଡ଼ିଲା, ସେମାନେ ସମସ୍ତେ ସେମାନଙ୍କ ଲିଙ୍ଗ ପରିବର୍ତ୍ତନ ନେଇ ଡାକ୍ତରଙ୍କ ନର୍ସିଂହୋମରେ ଏଡ଼ମିସନ ନେବାପାଇଁ ଚାହିଁଲେ । ଏତେଗୁଡ଼ାଏ ଦରଖାସ୍ତ ଏକ ସଙ୍ଗେ ଦେଖି ଡାକ୍ତର ଆଶ୍ଚର୍ଯ୍ୟ ହେଲେ । ଲିଙ୍ଗ ପରିବର୍ତ୍ତନ ରୋଗୀ ତ କେବେ ଏକ ସଙ୍ଗରେ ଏତେ ସଂଖ୍ୟାରେ ଦେଖାଯାଆନ୍ତିନ । ଏ କଣ ହେଲା ଜାଣିବା ପାଇଁ ସେ ଦରଖାସ୍ତକାରୀମାନଙ୍କୁ ସାକ୍ଷାତ ପାଇଁ ଡକାଇଲେ । ସେ ଏତେ ସଂଖ୍ୟାରେ ଲୋକ ଦେଖି ଆଶ୍ଚର୍ଯ୍ୟ ହେଲେ ।

ସେମାନଙ୍କ ପରୀକ୍ଷା ଚାଲିଲା । କି ଆଶ୍ଚର୍ଯ୍ୟ ! ସେମାନେ ସମସ୍ତେ ସୁସ୍ଥ ଯୁବକ । ସେମାନଙ୍କ ଠାରେ ଲିଙ୍ଗ ପରିବର୍ତ୍ତନ ହେବାର କୌଣସି ଲକ୍ଷଣ ଦେଖାନାହିଁ । ସେ ସେମାନଙ୍କୁ ଡାକିନେଇ ଏକାନ୍ତରେ ପଚାରିଲେ ସେମାନେ କାହିଁକି ଲିଙ୍ଗ ପରିବର୍ତ୍ତନ କରିବାକୁ ଚାହାନ୍ତି । ସେମାନେ ସମସ୍ତେ ଉତ୍ତର ଦେଲେ, ସେମାନେ ଯଦି ସ୍ତ୍ରୀ ପାଲଟିଯାନ୍ତି, ତେବେ ସହଜରେ ଭଲ ଭଲ ଚାକିରି ପାଇଯିବେ । ସେମାନଙ୍କ ଜୀବନ ସୁଖମୟ ହୋଇଯିବ ।

ଏହି କଥା ଶୁଣି ଡାକ୍ତର ସେମାନଙ୍କୁ ଖୁବ ଭର୍ତ୍ସନା କଲେ । କହିଲେ ସୁସ୍ଥ ଯୁବକ ବା ଯୁବତୀ କେବେ ଲିଙ୍ଗ ପରିବର୍ତ୍ତନ କରି ପାରନ୍ତିନି । ସେମାନଙ୍କର ଯେଉଁ ଧାରଣା ଡାକ୍ତରମାନେ ଇଚ୍ଛା କଲେ ହରମୋନ ଦେଇ ପୁରୁଷମାନଙ୍କୁ ସ୍ତ୍ରୀ କରିଦେଇ ପାରନ୍ତି, ତାହା ପୁରାପୁରି ଭୁଲ । ସେ ସେମାନଙ୍କୁ ଗାଳିଦେଇ ବିଦାକରି ଦେଲେ, କହିଲେ ସୁସ୍ଥ ଯୁବକ କେବେ ଯୁବତୀ ହୋଇପାରିବନି । ହରମୋନ ଯେ ପୁରୁଷକୁ ସ୍ତ୍ରୀ କରିଦେବ, ଏହା ପୁରାପୁରି ଏକ ମନଗଢ଼ା କଥା, ଏହା ପୁରାପୁରି ଅସମ୍ଭବ ।

ବର୍ତ୍ତମାନ କଥା ହେଲା ତେବେ କେଉଁମାନେ ଲିଙ୍ଗ ପରିବର୍ତ୍ତନ କରିପାରନ୍ତି ? ଏହାର ଉତ୍ତରରେ କୁହାଯିବ ସୁସ୍ଥ ସ୍ତ୍ରୀ ବା ସୁସ୍ଥ ପୁରୁଷ ଲିଙ୍ଗ ପରିବର୍ତ୍ତନ କରିପାରନ୍ତିନି । ଯେଉଁମାନେ ଲିଙ୍ଗ ପରିବର୍ତ୍ତନ କରନ୍ତି, ସେମାନେ ସମସ୍ତେ ଦ୍ୱିଲିଙ୍ଗୀ ବା ଉଭୟଲିଙ୍ଗୀ, ଦ୍ୱିଲିଙ୍ଗୀ ନହେଲେ ଲିଙ୍ଗ ପରିବର୍ତ୍ତନ ହୋଇପାରେନି ।

ପ୍ରତ୍ୟେକ ସମାଜରେ ଯେତେ ଲୋକ ଜନ୍ମ ନିଅନ୍ତି, ସେମାନଙ୍କ ଭିତରେ ପ୍ରତି ଦଶଲକ୍ଷ ପୁରୁଷ ଓ ସ୍ତ୍ରୀ ଭିତରେ ଜଣେ ଦ୍ୱିଲିଙ୍ଗୀ ଜନ୍ମ ନିଅନ୍ତି । ଦ୍ୱିଲିଙ୍ଗୀମାନଙ୍କ ଠାରେ ଉଭୟ ପୁରୁଷ ଓ ସ୍ତ୍ରୀ ଲିଙ୍ଗଥାଏ । ସେହି ଦୁଇଟି ଭିତରୁ ଗୋଟିଏ

ପରିସ୍ଫୁଟ ଅବସ୍ଥାରେ ଓ ଅନ୍ୟଟି ଅପରିସ୍ଫୁଟ ଅବସ୍ଥାରେ ଥାଏ । ଯେଉଁ ଲିଙ୍ଗଟି ପରିସ୍ଫୁଟ ଅବସ୍ଥାରେ ଥାଏ, ସେହି ଅନୁସାରେ ସେ ସ୍ତ୍ରୀ ବା ପୁରୁଷ ଶ୍ରେଣୀରେ ପରିଗଣିତ ହୁଏ । ସେ ପୁରୁଷ ବା ସ୍ତ୍ରୀ ହେଲେବି ଅନ୍ୟ ପୁରୁଷ ବା ସ୍ତ୍ରୀମାନଙ୍କ ଭଳି ସବୁ ପ୍ରକାର ଗୁଣ ହାସଲ କରି ନଥାଏ । ପୁରୁଷ ହୋଇଥିଲେ ବି ପୁରୁଷମାନଙ୍କ ମେଳରେ ରହିବାକୁ ଭଲ ନପାଇ ପାରିଥାଏ । ସ୍ତ୍ରୀମାନଙ୍କ ମେଳରେ ରହିବାକୁ ଭଲ ପାଇ ପାରିଥାଏ । ସ୍ତ୍ରୀମାନଙ୍କ ପ୍ରତି ତାର ଯୌନ ଆକର୍ଷଣ ସେମିତି କିଛି ନ ଥାଇ ପାରିଥାଏ । ସ୍ତ୍ରୀ ହୋଇଥିଲେ ସେ ଠିକ ଓଲଟା ଆଚରଣ ଦେଖାଇ ପାରିଥାଏ । ଏହି ଉଭୟଲିଙ୍ଗୀମାନେ ଉପରକୁ ସ୍ତ୍ରୀ, ପୁରୁଷ ଭଳି ଦେଖା ଯାଉଥିଲେ ହେଁ ସେମାନେ ପ୍ରକୃତରେ ସୁସ୍ଥ ସ୍ତ୍ରୀ କିମ୍ବା ସୁସ୍ଥ ପୁରୁଷ ଭଳି ନଥାନ୍ତି । ସେମାନଙ୍କ ଆଚରଣ ତଥା ଗଠନ ବିଧିରେ ନାନା ପାର୍ଥକ୍ୟ ଦେଖିବାକୁ ମିଳେ ।

କୌଣସି କାରଣ ବଶତଃ ଯଦି ସେମାନଙ୍କର ଅପରିସ୍ଫୁଟ ଯୌନ ଲିଙ୍ଗଟି ପରିସ୍ଫୁଟ ହେବାକୁ ଆରମ୍ଭ କରେ ଓ ପରିସ୍ଫୁଟ ଲିଙ୍ଗଟି ଧୀରେ ଧୀରେ ହ୍ରାସ ପାଇବାକୁ ଆରମ୍ଭ କରେ, ତେବେ ସେହି ଲୋକଟି ପ୍ରଥମେ ଶରୀରରେ କେତେକ ଯନ୍ତ୍ରଣା ପାଏ, ଯା' ଫଳରେ ସେ ଏକ ରୋଗୀ ଭାବରେ ଚିକିତ୍ସା ପାଇଁ ଡାକ୍ତରଙ୍କ ପାଖକୁ ଆସେ । ଡାକ୍ତର ଯେତେବେଳେ ପରୀକ୍ଷା କରି ଦେଖନ୍ତି ଯେ ତାହାର ଲିଙ୍ଗ ପରିବର୍ତ୍ତନର ଲକ୍ଷଣ ଦେଖାଦେଲାଣି ଓ ଅପରିସ୍ଫୁଟ ଲିଙ୍ଗଟି କ୍ରମେ ପରିସ୍ଫୁଟ ଅବସ୍ଥାକୁ ଆସିବାକୁ ଚେଷ୍ଟା କରୁଛି, ସେତେବେଳେ ଡାକ୍ତର ଚିକିତ୍ସା ଆରମ୍ଭକରନ୍ତି । କିଛିଦିନ ଆବଶ୍ୟକୀୟ ହରମୋନ ଉପଯୋଗ ଦ୍ୱାରା ଏହି ପରିବର୍ତ୍ତନକୁ ତ୍ୱରାନ୍ୱିତ କରନ୍ତି । ଦରକାର ପଡ଼ିଲେ ପରିସ୍ଫୁଟ ହୋଇ ଆସୁଥିବା ଯୌନାଙ୍ଗକୁ

ଅସ୍ତ୍ରୋପଚାର ଦ୍ୱାରା ଆଉରି ପରିଷ୍କାର କରିଦିଅନ୍ତି ଓ ହ୍ରାସ ପାଇ ଆସୁଥିବା ଯୌନ ଅଙ୍ଗକୁ କାଟି ବାଦ୍ କରି ଦିଅନ୍ତି । ବର୍ତ୍ତମାନ ସେହି ରୋଗୀଟି ଏକ ସୁସ୍ଥ ପୁରୁଷ ବା ସ୍ତ୍ରୀରେ ପରିଣତ ହୁଏ । ତା'ର ଅନ୍ୟ ଲିଙ୍ଗଟି ଲୁପ୍ତ ପାଇଥିବାରୁ ସେ ଦ୍ୱିଲିଙ୍ଗୀ ନହୋଇ ଏକ ସାଧାରଣ ସୁସ୍ଥ ପୁରୁଷ ବା ସ୍ତ୍ରୀ ରୂପରେ ରହେ । ସେ ଆଉ ଉଭୟ-ଲିଙ୍ଗୀ ହୋଇ ରହିପାରେନା । ଏହି ଧରଣର ପରିବର୍ତ୍ତନ ଫଳରେ ବହୁ ସ୍ତ୍ରୀ ପୁରୁଷ ଓ ବହୁ ପୁରୁଷ ସ୍ତ୍ରୀ ପାଲଟି ଯାଇଛନ୍ତି ।

ଏହି କିଛି ବର୍ଷ ତଳେ ଇଂଲଣ୍ଡରେ ଜଣେ ସୁଶ୍ରୀ ଯୁବକ ଥିଲେ, ତାଙ୍କ ନାଁ ହେଉଛି ମିଷ୍ଟର ଗର୍ଡନ ରେଙ୍ଗାଲ ହଲ । ସେ ଥିଲେ ପ୍ରଥମରୁ ଦ୍ୱିଲିଙ୍ଗୀ । ସେ ଯେତେବେଳେ ଜନ୍ମ ହେଲେ ତାଙ୍କୁ ପୁତ୍ର ଶିଶୁ କୁହାଯିବ କି କନ୍ୟା ଶିଶୁ କୁହାଯିବ କଷ୍ଟକର ହୋଇ ପଡ଼ିଲା । ଜନ୍ମ କରାଇ ଥିବା ଡାକ୍ତରଣୀ ବହୁ କଷ୍ଟକରେ ତାଙ୍କୁ ପୁଅ ବୋଲି ସ୍ୱୀକାର କରିଥିଲେ । ସେହି ଅନୁସାରେ ତାଙ୍କ ନାଁ ରଖାଯାଇଥିଲା ମିଷ୍ଟର ଗର୍ଡନ ରେଙ୍ଗାଲ ହଲ । ସେ ଯେତେବେଳେ ପାଞ୍ଚବର୍ଷର ହୋଇଥିଲେ, ସେ ନିଜକୁ ଅନୁଭବ କରୁଥିଲେ ଝିଅ ବୋଲି । ସେ ଯୁବତୀମାନଙ୍କ ମେଳରେ ରହି ଗପସପ କରିବାକୁ ବା ଖେଳିବାକୁ ଭଲ ପାଉଥିଲେ । ସେ ଯେତେବେଳେ ଯୁବକ ହେଲେ ହଠାତ୍ ତାଙ୍କର ଦେହ ଖରାପ ହେଲା । ଡାକ୍ତର ପରୀକ୍ଷା କରି ଦେଖିଲେ ଯେ ତାଙ୍କର ଲିଙ୍ଗ ପରିବର୍ତ୍ତନର ଲକ୍ଷଣ ଦେଖାଦେଲାଣି । ପରିଶେଷରେ ଆମେରିକାର ବାଲ୍ଟିମୋର ସହରସ୍ଥ ଜନ୍ ହପକିନ୍ସ ବିଶ୍ୱବିଦ୍ୟାଳୟର ହସପିଟାଲରେ ଅସ୍ତ୍ରୋପଚାର କରାଯାଇ ତାଙ୍କୁ ସ୍ତ୍ରୀରେ ପରିଣତ କରାଗଲା । ତାଙ୍କର ପୁଂଜନନେନ୍ଦ୍ରିୟ ଏକ ମାଂସ ପିଣ୍ଡୁଳା ଭଳି ଓହଳି ଥିଲା । ନା ସେଥିରେ ଥିଲା ଯୌନ ଉତ୍ତେଜନା

ନା ଥିଲା ଯୌନ ଅନୁଭବତା । ଡାକ୍ତରମାନେ ସେ ଅଂଶକୁ କାଟି ଫୋପାଡ଼ ଦେଇଥିଲେ ।

ଅସ୍ତ୍ରୋପଚାର ପରେ ହରମୋନ ଚିକିତ୍ସା ତାଙ୍କୁ ଏକ ସୁସ୍ଥ ସ୍ତ୍ରୀରେ ପରିଣତ କଲା । ତାଙ୍କ ତଳପେଟରେ ଗର୍ଭାଶୟ ଓ ଗର୍ଭକୋଷ ଅପରିପୁଷ୍ଟ ଅବସ୍ଥାରେ ଥିଲା । ଅସ୍ତ୍ରୋପଚାର ଦ୍ୱାରା ସେ ଦୁଇଟିକୁ ଯଥାସ୍ଥାନରେ ଯୋଡ଼ ହରମୋନ ଚିକିତ୍ସା କରିବା ଫଳରେ ତାଙ୍କର ମାସିକ ଋତୁସ୍ରାବ ଆରମ୍ଭ ହେଲା । ଅଳ୍ପ କେଇଦିନ ଭିତରେ ତାଙ୍କ ଦେହରେ ଯୁବତୀସୁଲଭ ଗୁଣ ସବୁ ଫୁଟି ଉଠିଲା । ତାଙ୍କର ସ୍ତନ ମାଂସଳ ହୋଇ ସ୍ତନ୍ୟ ଦୁଇଟି ଆକର୍ଷଣୀୟ ହୋଇ ଉଠିଲା । ସ୍ୱର ମଧୁର ହୋଇଗଲା । ଏକେତ ମୂଳରୁ ସେ ସୁନ୍ଦର ଥିଲେ । ସ୍ତ୍ରୀ ସୁଲଭ ଲକ୍ଷଣ ଦେଖାଦେବାରୁ ଏକ ସୁନ୍ଦରୀ ଝିଅ ଭାବରେ ଆହୁରି ଆକର୍ଷଣୀୟ ହୋଇ ଉଠିଲେ । ସେ ଏତେ ସୁନ୍ଦର ଦିଶିଲେ ଯେ ତାଙ୍କ ପ୍ରେମରେ ପଡ଼ି ମାର୍କିନ ଯୁବକ ଜନ ପେଟିଟା ସାଇମନ ତାଙ୍କୁ ଶେଷରେ ବିବାହ କଲେ । ଏହାଫଳରେ ତାଙ୍କ ନାମ ବଦଳି ମିସେସ ଜନ ପେଟିଟା ସାଇମନ ହେଲା । ସେ କିଛିଦିନ ପରେ ଗର୍ଭବତୀ ହୋଇ ଗୋଟିଏ ସନ୍ତାନର ମା ହେଲେ ।

ଏହିଭଳି ଲିଙ୍ଗ ପରିବର୍ତ୍ତନ ନେଇ ବହୁ ଉଦାହରଣ ଆଜିକାଲି ଆମ ସମାଜରେ ଦେଖିବାକୁ ତଥା ଶୁଣିବାକୁ ମିଳୁଛି । ତେଣୁ ଲିଙ୍ଗ ପରିବର୍ତ୍ତନ ଏକ ମାମୁଲି ଘଟଣା ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏମିତିକି ମହାଭାରତ ଯୁଗରେ ମଧ୍ୟ ଏଭଳି ଲିଙ୍ଗ ପରିବର୍ତ୍ତନ କଥା ଜଣା ଥିଲା । ମହାଭାରତରେ ଅଛି ଶିଖଣ୍ଡି ସ୍ତ୍ରୀ ଭାବରେ ଜନ୍ମପାଇ ପୁରୁଷ ହୋଇ ଯାଇଥିବାରୁ ଭୀଷ୍ମ ତାଙ୍କ ସହିତ ଯୁଦ୍ଧ ନକରି ଶରଶଯ୍ୟା ଆଦରି ମହାଭାରତ ଯୁଦ୍ଧରୁ ବିଦାୟ ନେଇଥିଲେ ।